# ସଂସାରଚିତ୍ର ।

(ନାଟକ)

ଶ୍ରୀ ଭବାନୀଚରଣ ପଟ୍ଟନାୟକଙ୍କ ଦ୍ୱାର

ପ୍ରଣୀତ

ଓ

ପ୍ରଥମ ବାର ପ୍ରକାଶିତ ।



Printed by V. Kar.
The Utkal Sahitya Press,
CUTTACK.
1915.

ମୂଲ୍ୟ ୫ ୦ ୯ ଅଠ ଅଣା ।

# ଉତ୍ସର୍ଗ ପତ୍ର ।



ଶ୍ରୀଯୁକ୍ତ ସାମନ୍ତ ବଳଦେବଚନ୍ଦ୍ର ଧୀର—

ପଟ୍ଟାଦ୍ଧିତ, ମଧୁପୁର—ଶ୍ରୀକରକମେଲେଷୁ—

ସବିନୟନିବେଦନମିଦଂ—

ମହାଶୟ,

ନାନା ସମୟରେ ଆପଣଙ୍କ ସହିତ ଆଳାପ କରି ଆପଣଙ୍କର ଅକୃତ୍ରିମ ସାହିତ୍ୟାନୁରାଗର ପରିଚୟ ପାଇ ମୁଗ୍ଧ ହୋଇଅଛି । ମଧୁପୁର ପରି ସ୍ଥାନରେ ରଙ୍ଗମଞ୍ଚ ସ୍ଥାପନରୁ ଦୃଶ୍ୟ କାବ୍ୟ ପ୍ରତି ଆପଣଙ୍କର ଶ୍ରଦ୍ଧାର ପରିଚୟ ବହୁକାଳରୁ ମିଳିଅଛି । ବର୍ତ୍ତମାନ ଏହି ପୁସ୍ତିକା ଖଣ୍ଡି ମୁଦ୍ରିତ କରିବାର ଭାର ସ୍ୱତଃ ଗ୍ରହଣପୂର୍ବକ ଅଯାଚିତ ଉତ୍ସାହ ପ୍ରଦାନଦ୍ୱାରା ଉତ୍କଳ-ସାହିତ୍ୟ ପ୍ରତି ଯେଉଁ ଅନୁରାଗ ପ୍ରଦର୍ଶନ କଲେ, ତାହା ସର୍ବଥା ପ୍ରଶଂସନୀୟ । ତହିଁର ଉପଯୁକ୍ତ ପ୍ରତିଦାନ ନ ହେଲେହେଁ କେବଳ କୃତଜ୍ଞତାର କ୍ଷୀଣ ନିଦର୍ଶନ ସ୍ୱରୂପ ପୁସ୍ତିକାଖଣ୍ଡି ଆପଣଙ୍କ ଶ୍ରୀଚରକମଳରେ ଅର୍ପଣ କଲି । ଇତି ।

ବିନୀତ
ଲେଖକ

# ନାଟ୍ୟୋଲିଖିତ ବ୍ୟକ୍ତିଗଣ ।



ପୁରୁଷ—

ରଜଧୁସ୍ତି ଶ୍ୟାମସୁନ୍ଦର ଦାସ ମହାପାତ୍ର—ଜଣେ ଧନୀ ଓ ମହାଜନ ।

ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ—କୁନ୍ତଳାର ପିତା (କନ୍ୟାପିତା)

ଦଣ୍ଡଧର କାନୁନଗୋ—ରସାନନ୍ଦର ପିତା (ବରପିତା)

ସଦାନନ୍ଦ—ରଜଧୁସ୍ତିଙ୍କ ଜ୍ୟେଷ୍ଠ ପୁତ୍ର ।

ରସାନନ୍ଦ—ଦଣ୍ଡଧର କାନୁନଗୋଙ୍କ ପୁତ୍ର ।

ବୃନ୍ଦାବନ—ରସାନନ୍ଦର ବନ୍ଧୁ ।

ଶ୍ରୀରାମ ସାମନ୍ତରାୟ—ରଜଧୁସ୍ତିଙ୍କ ସ୍ୱର୍ଗୀୟ ଜାମାତା ନରଞ୍ଜନ ବାବୁଙ୍କର ନକଟ ସମ୍ପର୍କୀୟ ଜ୍ଞାତି ।

କପିଳ—ରଜଧୁସ୍ତିଙ୍କ ଗୁମାସ୍ତା ।

ରାଘବ—ପଟ୍ଟନାୟକଙ୍କ ଗୁମାସ୍ତା ।

ଭଦ୍ରବ୍ୟକ୍ତିଗଣ, ରଜଧୁସ୍ତିଙ୍କ ବରକନ୍ଦାଜ ଗଜୁସିଂହ, ଦର୍ଶକବୃନ୍ଦ, ସଭାପତି, ସଭ୍ୟଗଣ, ସପନ ଦାସ ଚରଣି, ଗୁମାସ୍ତା, ଖାଉକଗଣ, ଚପରାସି, ବନ୍ଧୁଗଣ, ଭୃତ୍ୟଗଣ, ନର୍ତ୍ତକୀର ସମାଜଗଣ, ଖଇରାତି, ମଦନମୋହନ ବାବୁ, ରାଖାଲ ବାବୁ, କନେଷ୍ଟବଲଗଣ, କଏଦୀଗଣ, ଗ୍ରାମ୍ୟଲୋକମାନେ, କୁସ୍ତି-ବେଟିଗଣ, ଜେଲର ବାବୁ ଓ ଉଆଡ଼ରଗଣ ।

ସ୍ତ୍ରୀ—

କୁନ୍ତଳା—ପଟ୍ଟନାୟକଙ୍କ କନ୍ୟା ।
ତରଙ୍ଗିଣୀ—ଚଉଧୁରୀଙ୍କ କନ୍ୟା ।
ଚମ୍ପା—ତରଙ୍ଗିଣୀର ଦାସୀ ।

କୁନ୍ତଳାର ମାତା, ଚଉଧୁରୀଙ୍କ ପତ୍ନୀ ଓ ପ୍ରଜାବଧୂଗଣ, ଦଫ୍ତରର କାନୁନ୍‌ଗୋଙ୍କ ପତ୍ନୀ, ନର୍ତ୍ତକୀଗଣ, ବାଇକ, ରମ୍ଭା ଓ ଅନ୍ୟ ସଖୀଗଣ, ରମଣୀଗଣ, ବାଳିକାଗଣ ଓ ତେତେଶ ଜଣ ଗ୍ରାମ୍ୟ ରମଣୀ ।



# ସଂସାରଚିତ୍ର ।

## (ନାଟକ ।)

## ପ୍ରସ୍ତାବନା ।

ନଟୀ ।

ଗୀତ ।

ସଂସାର କଉତୁକ ଦେଖ ରେ ଭାଇ !
ଯେ ଯାହା କଉଶଳେ ସକଳେ ଧାଇଁ ।

କେ କରେ ସଞ୍ଚୟ କେ କରେ ଭୋଗ,
କେହ ନ ବୁଝେ କାହା କରମ ଯୋଗ,
ରୋଗ ଶୋକ ସନ୍ତାପ ସଦା ଗୋଡ଼ାଇ,
ଅବିବେକୀ ମାନବ ଚାହିଁ ନ ଚାହିଁ ।

କେହୁ ମନାସି ଗିରି ଶିରେ ଉଠିବ
ଗଭୀର ସ୍ରୋତେ ପଡ଼ି ହରାଏ ଜୀବ;
ଶିଶିରବଷି ବାହଭ୍ରମ ଜନ୍ମାଇ,
ଲୋଲୁପ ନେଏ ତାହା ବୁଝିବ କାହିଁ ।

ଯେତେ ଯେ କର କୂଟ କପଟ ଛଳ,
ନିଶ୍ଚୟ ଦିନେ ତାର ଭୁଞ୍ଜିବ ଫଳ;
ଯେତେକ ଯାହା କର ଯେତେ ଯୋଡ଼ାଇ,
ନ ରହେ କିଛି ଛପା ବିଧାତାଠାଇଁ ।

# ପ୍ରଥମ ଅଭିନୟ ।

## ପ୍ରଥମ ଦୃଶ୍ୟ ।

ସ୍ଥାନ—ଚଉଧୁରୀ ଶ୍ୟାମସୁନ୍ଦର ଦାସଙ୍କ ଗୃହ ।

( ଚଉଧୁରୀ ଶ୍ୟାମସୁନ୍ଦର ଦାସ, ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ, କପିଳ, ମାଧବ ଓ ଗଳ୍ପ ସହିତ )

ଚଉ—ଗୋବିନ୍ଦ ବାବୁ ! ଆପଣଙ୍କର ଆସିବାର କୌଣସି ଆବଶ୍ୟକ ନ ଥିଲା । ଭଦ୍ର ଲୋକର ଗୋଟାଏ କଥା । ଆମ୍ଭେ ଯେତେବେଳେ ଜବାବ ଦେଇଅଛୁଁ, ଆପଣଙ୍କର ଆବଶ୍ୟକ ସମୟକୁ ନିଶ୍ଚୟ ଟଙ୍କା ଦେବୁଁ ।

ଗୋବି—ଆଜ୍ଞା ନା—କାଲି ବରକର୍ତ୍ତାଙ୍କ ପକ୍ଷର ସ୍ଥିର ଜବାବ ଦେବାର କଥା ଅଛି; ମନେ କଲି, ଥରେ ସ୍ମରଣ କରାଇଦେଇ ଆସେଁ ।

ଚଉ—ସେଥି ସକାଶେ ଆପଣ କୌଣସି ଚିନ୍ତା କରିବେ ନାହିଁ, ଆପଣଙ୍କର କନ୍ୟା ବିବାହ, ଆମ୍ଭେ ଜବାବ ଦେଇଅଛୁଁ, ଆମ୍ଭ ନିକଟରେ ଟଙ୍କା ସକାଶ ନ ହେଲେ ଆମ୍ଭେ କରଜ କରି ହେଲେ ଆପଣଙ୍କର କାର୍ଯ୍ୟ ଚଳାଇବୁଁ ।

ଗୋବି—ଆପଣ ଦୟାଶୀଳ, ଆପଣ ଆମ୍ଭର ମୁରବି, ଆପଣଙ୍କର ଏହି ଅନୁଗ୍ରହ ଚିରଦିନ ଥାଉ, ଏତିକିମାତ୍ର ପ୍ରାର୍ଥନା ।

ଚଉ—ବହୁତ ଭଲ, ବହୁତ ଭଲ, ଆପଣ ଯାଉନ୍ତୁ । ନିଃସନ୍ଦେହରେ ବରକର୍ତ୍ତାଙ୍କୁ ଜବାବ ଦେଇ ଆସନ୍ତୁ ।

(ଗୋବନ୍ଦ ଓ ଚଉଧୁରୀଙ୍କର ପରସ୍ପରଙ୍କୁ ଅଭିବାଦନ ଏବ ଗୋବନ୍ଦଙ୍କର ପ୍ରସ୍ଥାନ, ଚଉଧୁରୀଙ୍କର ସ୍ୱଗତ )

ପଟ୍ଟନାୟକଙ୍କର ସମସ୍ତ ସମ୍ପତ୍ତି ଏକପ୍ରକାର ହସ୍ତଗତ ହେଲାଣି, କେବଳ ଗୋବନ୍ଦପୁର ମକଦମି ଖଣ୍ଡି ହସ୍ତଗତ ହୋଇ ନାହିଁ; ସେ ଖଣ୍ଡି ବେଶ୍ ସମ୍ପତ୍ତି, ତାହା ମାତ୍‌ବସ୍ତରେ ୨୦୦୦୦ ଟଙ୍କା ଦେଲେ ଲୋକସାନ ନାହିଁ । (ପ୍ରକାଶ୍ୟ) କପିଳ ! ପଟ୍ଟନାୟକଙ୍କ ନାମରେ ଟଙ୍କା ସକଲ କର ।

କପି—ଆଜ୍ଞା ହଉ ।

( ଚଉଧୁରୀଙ୍କର ପ୍ରସ୍ଥାନ )

ସୁପ—କପିଳ ଭାଇ ! ଶାମିନ୍ଦ କହୁଥିବାରୁ ମୁଁ ବସିଛି । ଚଉଧୁରୀଙ୍କର ପିନା ହୁକୁମ୍, ଅସଲ୍ ତ ତୁମେ; ଶାମିନ୍ଦ କହୁଛନ୍ତି, ଠିକ୍ ଏ ଜରୁର୍ ଟଙ୍କା ସକଲ କରି ଦେବ ।

କପି—ଅରେ ଯା ହୋ, ଏତେବେଳକୁ ଆମେ ଅସଲ । ହୋଲ ବଶସ୍ତରେ କଛି କଛି ପାଉଣା ମିଳୁଥିଲା ଯେ, ଏଣିକି ସେତକ ବି ବୁଡିଲା ।

ସୁପ—କପିଳ ଭାଇ ! ସେଥିଲାଗି କିଛି ମନେ କରିବ ନାହିଁ, ମୁଁ ସବୁ ଏଇ ଟଙ୍କାରୁ କହି ଦେଆଇ ଦେବ, ଶାମିନ୍ଦ ଆମର ନ ଦେଲା ଲୋକ ନୁହନ୍ତି; କିନ୍ତୁ ହାତରେ ତ ଧନ ନାହିଁ, କଣ କରିବେ ?

କପି—ଦେଖାଯିବ । ଚଉଧୁରୀଙ୍କ ମିଠେଇଖିଆ ତ ଜାଣ, ଆଉ

ଆମ ମିଠେଇଖିଆ କଣ ମିଳିବ, ଜବାବ କର, ଯେତେବେଳେ ଇଚ୍ଛା ଅସିବ, ଟଙ୍କା ଦେଇଯିବ। ଅମର ଶତକଡ଼ା ୫ ଟଙ୍କାରୁ କମ ହେବ ନାହିଁ ।

ରାଘ—ତମକୁ ୫ ଟଙ୍କା ଦବାରେ କୌଣସି ଆପତ୍ତି ନାହିଁ, ମାତ୍ର ଆମ ଖାମିନ୍ଦଙ୍କୁ ୫ ଟଙ୍କା ଶୁଣେଇଲେ ତ ଚଳିବ ନାହିଁ ।

କପି—ହଁ ହଁ, ବୁଝିଲୁ; ତାଙ୍କୁ ଯାହା କହିବ, ତାହା ଶୁଣେଇ-ଦବା, ସେଥିରେ ଆମର ହାନି କଣ ?

ରାଘ—ଶତକଡ଼ା ୧୦ ଟଙ୍କା ଶୁଣେଇଲେ ତମର ପାଞ୍ଚ ଆଉ ଆମର ପାଞ୍ଚ ।

କପିଳ—ବେଶ୍, ସେଇଆ ଶୁଣେଇଦବା ।

ଗଜୁ—ଗୁମାସ୍ତା ବାବୁ ! ମୋର ଶତକଡ଼ା ଦୁଇ ଟଙ୍କା ଲେଖାଏଁ ଭିଅଜବ ପାଉଣା ହଉଚି ।

ରାଘ—ଅଚ୍ଛା ଅଚ୍ଛା, ଖାମିନ୍ଦଙ୍କୁ କହିବ ।

ଗଜୁ—ଖାମିନ୍ଦଙ୍କୁ କଣ କହିବ ହୋ ? ମୋର ଖାମିନ୍ଦ ଆପଣ; ଆପଣମାନେ ପାଞ୍ଚ ପାଞ୍ଚ ଟଙ୍କା ପାଇଲେ ମୋର ହକ ପାଉଣା ହଉଚି ଦୁଇ ଟଙ୍କା; ଏ କଥା ପାଞ୍ଚ ଜଣରେ ପଡ଼ୁ, ନିଖାପ ହଉ, ଖାମିନ୍ଦମାନେ ଶୁଣନ୍ତୁ, ଯାହା ଛିଣ୍ଡି-ଦେବେ, ମତେ ସେଇଆ ମିଳିବ ।

କପିଳ ଓ ରାଘବ— ଚୁପ୍ ଚୁପ୍, ଚୁପ୍ ଚୁପ୍ କରି କହ ।

ଗଜୁ—ଚୁପ୍ ଚୁପ୍ କରି କହିବ କାହିଁକି ? ଅତ୍ୟନ୍ତ ବଡ଼ କରି କହିବ, (ଉଚ୍ଚସ୍ୱରେ) ମୋର ଉଆଳିବ ପାଉଣା ଦୁଇ ଟଙ୍କା ହଉଛି ।

କପିଳ ଓ ରାଘବ—ଆରେ ଅସ୍ତେ ହୋ, ଅସ୍ତେ ହୋ, ଧୀରି ଧୀରି କରି କହ ।

ଗଜୁ—କାହିଁକି ଅସ୍ତେ ହେବ ନା ? କାହିଁକି ଧୀରି ଧୀରି କରି କହିବ ନା ? ଅତ୍ୟନ୍ତ ବଡ଼ ପାଟି କରି କହିବ, ସମସ୍ତଙ୍କୁ ଡାକିଡାକି କରି କହିବ, ମୋର ହକ ପାଉଣା ହଉଛି ଦୁଇ ଟଙ୍କା ଲେଖାଏଁ ।

କପିଳ ଓ ରାଘବ—ହଁ ହଁ ପାଇବୁ, ଦୁଇ ଟଙ୍କା ଲେଖାଏଁ ପାଇବୁ ।

ଗଜୁ—ସେହି କଥା କୁହ । ମୁଁ ଆଗେ ଦଉଡ ଦଉଡ଼ ଟଙ୍କା ଆଦାୟ କଲେ ତେବେ ସିନା ଯାଇ ସମସ୍ତଙ୍କର ହାତ ଫିଟିବ । ମୁଁ ଏଥର ଯାଉଛି । ଗୁମାସ୍ତା, ଆପଣ ଶୀଘ୍ର ଆସନ୍ତୁ ।

(ଗଜୁ ଫିହର ପ୍ରସ୍ଥାନ)

କପିଳ—ଯେତେବେଳେ ଇଚ୍ଛା ଆସିବ, ଏହି ହିସାବରେ ପାଉଣା ବାଦ ଦେଇ ଟଙ୍କା ନେଇଯିବ ।

(କପିଳ ଓ ରାଘବଙ୍କର ଭିନ୍ନ ଭିନ୍ନ ଦିଗକୁ ପ୍ରସ୍ଥାନ)



## ଦ୍ୱିତୀୟ ଦୃଶ୍ୟ ।

### ସ୍ଥାନ—ଦେବମନ୍ଦିର ।

( ବରକର୍ତ୍ତା ଦଶରଥ କାନୁନଗୋ, କନ୍ୟାକର୍ତ୍ତା ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ ଏବଂ ଉଭୟ ପକ୍ଷର କେତେକ ଜଣ ଭଦ୍ରବ୍ୟକ୍ତି ଓ ଦର୍ଶକବୃନ୍ଦ । ନର୍ତ୍ତକୀମାନଙ୍କର ପ୍ରବେଶ ଓ ଗୀତ )

ଜୟ ଜଗପ୍ରାଣ ଜୟ ମଙ୍ଗଳନିଧାନ ।
ଜୟ ଜଗତକାରଣ ଜଗତପରାଣ ।
ଏ ଜଗତ ସୃଜନ ଏ ଜଗତ ପାଳନ
ପୁରୁଷ ପ୍ରକୃତି ମେଳ ତୁମ୍ଭରି ଭିଆଣ ।
ବନ୍ଦି ତବ ଚରଣ ମାଗୁଅଛୁଁ ଶରଣ,
ଏ ଶୁଭ ବିବାହ ଯୋଗେ କର ଶୁଭ ବିଧାନ ।
ବର କନ୍ୟା ଉଭୟ ଢାଳ ହୃଦେ ହୃଦୟ
ଭୁଞ୍ଜନ୍ତୁ ସତତ ତବ ଅକ୍ଷୟ କଲ୍ୟାଣ ।

( ନର୍ତ୍ତକୀମାନଙ୍କର ପ୍ରସ୍ଥାନ )

୧ମ ଭଦ୍ର—ବର୍ତ୍ତମାନ ଆମ୍ଭମାନଙ୍କର ଯାହା କଥାବାର୍ତ୍ତା ହେବ ହେଉ । ଯୋଗ୍ୟ ପାତ୍ର, ଯୋଗ୍ୟା ପାତ୍ରୀ, ବଡ଼ ସୁନ୍ଦର ସମ୍ବନ୍ଧ, କେବଳ ଦେବା ନେବାର କଥାଟା ସ୍ଥିର ହୋଇଗଲେ ଯେ ଯାହାର ଆୟୋଜନରେ ଲାଗିବେ ।

ଗୋବିନ୍ଦ—ଦେବା ନେବା ସମ୍ବନ୍ଧରେ ମୁଁ ଏତିକିମାତ୍ର କହିପାରେ ଯେ, କେବଳ ଜଳପାତ୍ର ସହିତ କନ୍ୟାଦାନ କରିବି, ମୋର ଆଉ କିଛିମାତ୍ର ଦେବାର ଶକ୍ତି ନାହିଁ ।

୨ୟ ଭଦ୍ର—ସେ କଥା କହିଲେ ଫେର କିପରି ଚଳିବ ? ଗୋବିନ୍ଦ ପଟ୍ଟନାୟକଙ୍କ ଘର, ଖାନ୍‌ଦାନ୍ ଘର, ପଟ୍ଟନାୟକଙ୍କ ନାମ ଚାରିଆଡ଼େ ଡାକ୍, ଆପଣଙ୍କ ନାମକୁ ଚାହିଁ ଅବଶ୍ୟ ଆପଣଙ୍କୁ ଦେବାକୁ ହେବ ।

୩ୟ ଭଦ୍ର—ତା ବୋଲି ଯେ ସେ କିଛି ନ ଦେବେ, ଆପଣ ଏପରି ଭାବିବେ ନାହିଁ । ଅବଶ୍ୟ ତାଙ୍କ ବିବେଚନା ମୁତାବକ ସେ ଦେବେ ।

ଦତ୍ତହରି—ସେ କଥା ସତ, ସେ କଣ ନ ଦେବେ କି, ତେବେ ଯାହା ଯାହା ଦେବେ—ପାଞ୍ଚ ଜଣ ଭଦ୍ରଲୋକ ଉପସ୍ଥିତ ଅଛନ୍ତି—ଶୁଣିବାକୁ ଇଚ୍ଛା କରନ୍ତି ।

ଗୋବି—କନ୍ୟାଙ୍କୁ ସମସ୍ତ ସୁବର୍ଣ୍ଣର ଅଳଙ୍କାର ଦେବି । ଜାମାତାଙ୍କୁ ହାର, ମୁଦି, ଘାଉବଣ୍ଟୀ, ସୁନାର ଚଢ଼ା ଓ ଘଡ଼ି ଦେବି; ଏ ଛଡ଼ା ବାସନ୍‌କୁସନ୍, ପଲଙ୍କ, ଶବାର୍, ପାଲିଙ୍କି ଓ ଅନ୍ୟାନ୍ୟ ବାଜେ ଜିନିଷମାନ ୨୫ ସାମନ୍ତ ମର୍ଯ୍ୟାଦାରେ ଯେପରି ଦିଆଯାଏ ତାହା ଦେବି, ଗୋଟିଏ ଘୋଡ଼ା ମଧ୍ୟ ଦେବି ।

ଦତ୍ତହରି—୨୫ ସାମନ୍ତରେ ହେବ ନାହିଁ, ୪୦ ସାମନ୍ତ ମର୍ଯ୍ୟାଦାରେ ସମସ୍ତ ଦେବାକୁ ହେବ । ଅଳଙ୍କାର ୫ ଭରିରେ ବି ହୋଇ ପାରେ, ୫୦୦ ଭରିରେ ବି ହୋଇ ପାରେ । ଆପଣ ଯାହା ଦେବେ, ତାହା କେତେ ଭରି ସୁନାର ହେବ, ତାହା କହିଲେ ଭଲ ହୁଅନ୍ତା ।

୪ର୍ଥ ଭଦ୍ର—ଗୋବିନ୍ଦ ବାବୁ ! ଆପଣ କୁଣ୍ଠିତ ହେଲେ ଚଳିବ

ନାହିଁ । ତାଙ୍କର ବଡ଼ବଡ଼କରେ ସୁନା ଗହଣା ପିନ୍ଧିବାକୁ ବାରଣ ଥିଲା । ଏବେ ଆପଣଙ୍କ ଯୋଗେ ତାଙ୍କୁ ବଡ଼-ବଡ଼ଙ୍କ ବଧି ଭାଙ୍ଗିବାକୁ ପଡ଼ୁଛି; ଆପଣ ଯେବେ ଟିକଏ ବେଶି ବେଶି କରି ନ ଦେବେ, ତେବେ ବଡ଼ବଡ଼ଙ୍କ ବଧି ସେ ଭାଙ୍ଗିବେ କାହିଁକି ?

ଦତ୍ତ—ପାଲଙ୍କି ଆମର ଦରକାର ନାହିଁ ।

୪ର୍ଥ ଭଦ୍ର—ତାଙ୍କର କୌଣସି ପୁରୁଷରେ କେହି ପାଲଙ୍କି ଚଢ଼ି ନ ଥିଲେ, ଅକାରଣ ପାଲଙ୍କିଟା ତାଙ୍କର କଣ ହବ ?

ଦତ୍ତ—ବୃଥାରେ ଖର୍ଚ୍ଚାନ୍ତ ହେବାର ଦରକାର ନାହିଁ । ଘୋଡ଼ା ମଧ୍ୟ ଦେବାର ପ୍ରୟୋଜନ ନାହିଁ ।

୪ର୍ଥ ଭଦ୍ର—ଆପଣଙ୍କ ଘୋଡ଼ାକୁ ଯେବେ ଦାନାପାଣି ନ ପାସ-ଫାସ କରି ଖୋଇବାକୁ ନ ପଡ଼ିବ, ତା କହନ୍ତୁ, ତେବେ ଭଲ—

ଦତ୍ତ—ଘୋଡ଼ା ପାଲଙ୍କି ପରିବର୍ତ୍ତେ ଖଣ୍ଡେ ମଟରକାର ଗାଡ଼ି ଦେବେ ।

୪ ର୍ଥ ଭଦ୍ର—ଏ ଖୁବ୍ ସୁବିଧା କଥା । ଅକାରଣଟାରେ ଘୋଡ଼ା ପାଲଙ୍କିରେ ଖର୍ଚ୍ଚାନ୍ତ ହେବେ କାହିଁକି ? ସେ ବଂଶଟାର ଗାଡ଼ି ଚଢ଼ିବାର ଭାରି ସଉକ । ଅଜା ତାଙ୍କର ଗାଡ଼ି ଚଳାଇ ଚଳାଇ ଜୀବିକା ନିର୍ବାହ କରୁଥିଲେ । ଏପର୍ଯ୍ୟନ୍ତ ସୁଦ୍ଧା ସେ ଅଭ୍ୟାସ ଛାଡ଼ି ନାହିଁ । ଆଜି ଏଠାକୁ ଓଦର ଗାଡ଼ିରେ ଆସିଛନ୍ତି । ମଟର ଗାଡ଼ି ଆପଣଙ୍କୁ ଦେବାକୁ ବି ସୁବିଧା, ତାଙ୍କୁ ନେବାକୁ ବି ସୁବିଧା । ଭଲ-

ମାଲଥା ଘର, ସ୍ତ୍ରୀଧାନ୍ଟର ଅଭାବ, ଆପଣଙ୍କର ବେରାମ ଅରାମ, ଭଲ ମନ୍ଦକୁ କୋଉଁ ଆପଣଙ୍କର ମଟରଗାଡ଼ିରେ ବସି ବଲେ ବଲେ ଆସି ଯାଇ ଥର ଲେଖାଏଁ ଦେଖିଯାଇ ପାରିବେ ।

ଦତ୍ତ—ଯୋଉଁ ଆପଣଙ୍କର ବି. ଏ. ପାସ କରି ଅଛନ୍ତି, ସେ ମରହଟ୍ଟିଆ ନୁହନ୍ତି, ତାର ଗାରବଛୀ ତାଙ୍କର କଣ ହେବ ? ତହିଁ ପରିବର୍ତ୍ତେ ଗୋଟିଏ ସୁନାର ଘଡ଼ି ଓ ଗୋଟିଏ ସୁନାର ଗାର୍ଡଚେନ୍ ଦେବେ ।

୪ ର୍ଥ ଭଦ୍ର—ଏ ଯେ ଗୋଟାଏ କଥାର କଥା ।

ଦତ୍ତ—ଅଉ ଅମ୍ଭେ ବନ୍ଧୁବାନ୍ଧବ ଯେନ ଏତେଦୂର ଆସିବୁଁ, ଆମ୍ଭଙ୍କୁ ରାସ୍ତାଖର୍ଚ୍ଚ ପକାଶେ ପାଞ୍ଚ ହଜାର ଟଙ୍କା ଦେବାକୁ ହେବ ।

୪ ର୍ଥ ଭଦ୍ର—ସମ୍ବନ୍ଧ କରୁ ଅନ୍ୟାୟ କଥା କହୁ ନାହାନ୍ତି, ଚାରି କ୍ରୋଶ ପାଞ୍ଚ କ୍ରୋଶ ଦୂରରୁ ଆସିବେ, ଅବଶ୍ୟ ବନ୍ଧୁ ବାନ୍ଧବ, ସାଇ ଭାଇ, ବେଠିଆ ବେଗାର କରି ଚାଳିଶ ପଚାଶ ଜଣରୁ କମ ଆସିବେ ନାହିଁ, ସମ୍ବନ୍ଧଙ୍କର ତ ଖୋଲା ହାତ, ମୁଠା ମୁଠା ହୁଣ୍ଡୁ ଅଉ ଗଣ୍ଡାଗଣ୍ଡା ଲୁଣ—ଯେବେ ଦଅନ୍ତି—ତେବେ ତାଙ୍କର ଦଶ ହଜାର ଟଙ୍କା ଖରଚ ହୋଇଯିବ, ଆପଣଙ୍କୁ ପାଞ୍ଚ ହଜାର ମାଗୁଛନ୍ତି ସିନା, ଅଧରି ତ ପାଞ୍ଚ ହଜାର ହାତରୁ ପଡ଼ି ଯିବ ।

ଦତ୍ତ—ଆପଣଙ୍କର ଜାମାତାଙ୍କୁ ବି. ଏ. ପର୍ଯ୍ୟନ୍ତ ପଢ଼ାଇବା

ନିମନ୍ତେ ଆମ୍ଭଙ୍କୁ ପାଞ୍ଚ ହଜାର ଟଙ୍କା କରଜ କରିବାକୁ ପଡ଼ିଥିଲା, ତାହାର ଅସଲ ସୁଦ ବର୍ତ୍ତମାନ ଆଠ ହଜାର ହେଲଣି, ସେ ଟଙ୍କାଟା ଆପଣଙ୍କୁ ଶୁଝି ଦେବାକୁ ପଡ଼ିବ ।

୪ର୍ଥ ଭଦ୍ର—ସେ ତ ହିନ୍ଦୁ ଆଇନ ମିତାକ୍ଷରା ଶାସ୍ତ୍ର ସର୍ବ୍ବାଇ-ଦ୍ୱାର ବିଧି ଅନୁସାରେ ଆପଣ ପରିଶୋଧ କରିବାକୁ ବାଧ୍ୟ ।

ବନ୍ଧୁ—ଏଣିକି ଏମ୍. ଏ. ଓ ବି. ଏଲ୍. ପଢ଼ିବାର ଖରଚଟା କୋଉଁ ଆପଣ ନ ଦେବେ ଯେ, ମୁଁ କହିବ ?

୪ର୍ଥ ଭଦ୍ର—ଅବଶ୍ୟ, ଅବଶ୍ୟ, ଏ ଦୁଇଟା ପାଠ କେବଳ ଆପଣଙ୍କ କନ୍ୟାଙ୍କ ସକାଶେ, ବିଶେଷତଃ ବିବାହ ପରେ ପୁତ୍ରର ବିଦ୍ୟାଶିକ୍ଷାର ଖରଚ—ଆପଣ ଓକିଲ ମୁକ୍ତାର-ମାନଙ୍କୁ ପଚାରନ୍ତୁ—ପିତା ବହନ କରିବାର କୌଣସି ଆଇନ୍ ବା କାନୁନ୍‌ରେ ନାହିଁ ।

ବନ୍ଧୁ—ଆଉ ଗୋଟିଏ କଥା—ଯେବେ ଜାମାତା ଆପଣଙ୍କର ଡେପୁଟି କଲେକ୍ଟର ହୋଇଗଲେ,ତେବେ ତ ଆପଣଙ୍କର ଅଭି ଚିନ୍ତା ନାହିଁ ? ତା ନ ହେଲେ ଓକାଲତିରେ ପସାର ହେବାଯାଏ ଆପଣ ଚଳାଇବେ ।

୪ର୍ଥ ଭଦ୍ର—ଜବାବ ମୁତାବକ ଟଙ୍କାଟା ଦିଅ ନିଅ ହୋଇଗଲା ପରେ ଜାମାତାଟି ସମ୍ପୂର୍ଣ୍ଣରୂପେ ଆପଣଙ୍କର ହୋଇଗଲେ, ଆପଣଙ୍କ ମାଲ ଆପଣ ସମ୍ଭାଳିବେ; କେବଳ ତାଙ୍କର ରୋଜଗାର ଟଙ୍କାରେ ସେ ଆପଣାର ପିତା ମାତାଙ୍କୁ ପ୍ରତିପୋଷଣ କରିବେ ।

ଗୋବନ୍ଦ—ମହାଶୟ ! ମୁଁ ଏତେ ଟଙ୍କା ଦେଇ ପାରିବି ? ମୋର ଶକ୍ତି କେତେ ?

ଦତ୍ତ—ଏଠାରେ ଆପଣଙ୍କର ଶକ୍ତି ସହିତ କୌଣସି ସମ୍ପର୍କ ନାହିଁ । ପାତ୍ରର ଯୋଗ୍ୟତା ପ୍ରତି ଲକ୍ଷ୍ୟ ରଖି କଥା କହିବାକୁ ହେବ ।

୪ର୍ଥ ଭଦ୍ର—ନିଶ୍ଚୟ, ନିଶ୍ଚୟ, ବର ମେଟ୍ରିକ୍ୟୁଲେସନ୍ ପାସ୍ କରିଥିଲେ ଜମିବାଡ଼ି ବିକ୍ରୟ କରିବାକୁ ହୁଏ; ଆଇ. ଏ. ପାସ୍ କରିଥିଲେ ଜମିବାଡ଼ି ଓ ଘରଦ୍ୱାର ବିକ୍ରୟ କରିବାକୁ ହୁଏ; ବର ବି. ଏ. ପାସ୍ କରିଥିଲେ ଜମି ବାଡ଼ି, ଘର ଦ୍ୱାର ଓ ସ୍ତ୍ରୀ ପରିବାର ସମସ୍ତ ବିକ୍ରୟ କରିବାକୁ ହେବ । ପାସ୍ ସାର୍ଟିଫିକେଟ ଦେଖନ୍ତୁ, ତହିଁରେ ଏ କଥା ସ୍ପଷ୍ଟ ଲେଖା ଅଛି ।

ଦତ୍ତ—ସୁନାର ଯାହା ଅଳଙ୍କାର ଦେବେ, ତହିଁର ମୂଲ୍ୟ ନଧାନ୍ତୁ ପକ୍ଷେ ତିନି ହଜାର ଟଙ୍କା ହେବା ଉଚିତ ।

୪ର୍ଥ ଭଦ୍ର—ଗହଣା ପରିବର୍ତ୍ତେ ଯେବେ ଟଙ୍କାଟା ନଗଦ ଦେଇ ପକାନ୍ତେ, ତେବେ ଅତୁରି ଉତ୍ତମ ହୁଅନ୍ତା ।

ଦତ୍ତ—ଆପଣଙ୍କୁ ଆଉ ଗୋଟିଏ କଥା କହୁଥାଏଁ—ବଣିଆ-ମାନେ ଘୋରି ଠକ, ଆପଣଙ୍କର କନ୍ୟା ବିବାହ, ଆପଣ ତ୍ରିରିଆଡ଼େ ବ୍ୟସ୍ତ ରହିବେ, ଆପଣ ସୁନା ଓଜନ କରି ଆମ୍ଭ ଜମା ଦେଇଦେବେ, ଅମ୍ଭେ ବରାଦ କରି ଅଳଙ୍କାର ତିଆର କରାଇ ନେବୁଁ; ଆପଣଙ୍କୁ କେବଳ ମଜୁରିଟା ଅଗତ୍ତୁକ ଦେବାକୁ ପଡ଼ିବ ।

୪ର୍ଥ ଭଦ୍ର—ଦେଖନ୍ତୁ, ଏପରି ସମୁଦ୍ର ମଧ୍ୟ ପାଇବା ବହୁ ତପସ୍ୟାର ଫଳ କହିବାକୁ ହେବ । ସମୁଦ୍ର ପାସ୍ କର୍ ସମୁଦ୍ର । ତାଙ୍କର ଲୋଭ ନାହିଁ, ଅହଙ୍କାର ନାହିଁ, ଆତ୍ମପର ଜ୍ଞାନ ନାହିଁ; ଭରି ଉଦାରହୃଦୟ; ତାଙ୍କ ସହିତ ସମ୍ବନ୍ଧ ନ ହେଉଣୁ ସେ ଆପଣଙ୍କର ସମସ୍ତ ସମ୍ପତ୍ତି ତାଙ୍କର ଜ୍ଞାନ କଲେଣି ।

ଦତ୍ତ—ଯାହା କହିବାର ଶୀଘ୍ର କହନ୍ତୁ ।

ଗୋବ—ମୋହର ଆଉ କହିବାର କଣ ଅଛି ? ଯେତେବେଳେ ଭଗବାନ୍ କନ୍ୟା ଦେଇଅଛନ୍ତି, ଯେଉଁ କାଳରୁ ମୁଁ କନ୍ୟାପିତା ହୋଇଅଛି, ସେହି କାଳରୁ ମୋହର କହିବାର ସମସ୍ତ ଅଧିକାର ରହିତ ହୋଇଅଛି ।

ଦତ୍ତ—ତାହାହେଲେ ଆମ୍ଭେମାନେ ବୁଝିବୁଁ ଯେ କୌଣସି ପ୍ରସ୍ତାବରେ ଆପଣଙ୍କର କିଛିମାତ୍ର ଆପତ୍ତି ନାହିଁ, ଆପଣ ଆମ୍ଭର ପ୍ରସ୍ତାବମତେ ସମସ୍ତ ଦେବାକୁ ସ୍ୱୀକୃତ ଅଛନ୍ତି ।

୪ର୍ଥ ଭଦ୍ର—ଏଃ ! ସଙ୍କ୍ଷିପ୍ତ ସାରଗ୍ରାହୀ ବ୍ୟକ୍ତି, କେବଳ ସାରଟିକି ବାଛି ନେଲେ ।

ଦତ୍ତ—ଆଉ ଗୋଟିଏ କଥା, ଏଟା କେବଳ ଆପଣଙ୍କୁ ଅନୁରୋଧ ମାତ୍ର, ଆଶା କରୁଁ ଆପଣ ଆମ୍ଭର ଅନୁରୋଧ ଅବଶ୍ୟ ରକ୍ଷା କରିବେ । ଆମ୍ଭର ଏକମାତ୍ର ପୁତ୍ର ସନ୍ତାନ, ଆମ୍ଭର ଇଚ୍ଛା ବିବାହଟି ଆଡ଼ମ୍ବରରେ ହେଉ; ମାତ୍ର ଜାମାତା ଆପଣଙ୍କର ନବ୍ୟ ସଭ୍ୟ, ସେ ଗୃହାନ୍ତି, ଯେତେ କମ ଖରଚ ହୁଏ, ତେତେ, ଉତ୍ତମ ।

୪ର୍ଥ ଭଦ୍ର— ଜାମାତା ଆପଣଙ୍କର ବିବାହବ୍ୟୟସଙ୍କୋଚସମିତିର ଜଣେ ସଭ୍ୟ, ସେ ବିବାହରେ ପିତାଙ୍କର ବ୍ୟୟ ହେବାକୁ ଦେବେ ନାହିଁ ।

ଦତ୍ତ—ସମସ୍ତଙ୍କର ମତ ବଛାଏ ରକ୍ଷି କାର୍ଯ୍ୟ କରିବ ଅଭିପ୍ରାୟରେ ଏହିପରି ସ୍ଥିର କରି ଯାଇଅଛି, ନାଚ ତାମସା ଓ ରୋଷନାଇ ଆଦି ଯାହା କିଛି କରିବାକୁ ହେବ, ସେଟା ଆପଣ ସକଳ କରିନେବେ । ଅମ୍ଭେ କେବଳ ବର ପାଲକୀଖଣ୍ଡି ଘେନ ଉପସ୍ଥିତ ହେବୁଁ ।

୪ର୍ଥ ଭଦ୍ର—ଦେଖନ୍ତୁ, ବିବାହର ବ୍ୟୟ ସଙ୍କୋଚର ବ୍ୟବସ୍ଥାଟା ଶିଖି ରଖନ୍ତୁ । ପୁଣି ବିବାହ ସମୟକୁ ବଡ଼ କାର୍ଯ୍ୟରେ ଲାଗିବ । ଆଉ ବିଳମ୍ବ କାହିଁକି ? ମହାପ୍ରସାଦ ପଣା ଯାଉନ୍ତୁ ।

ଦତ୍ତ—ଆଜ୍ଞା ଏ—

୪ର୍ଥ ଭଦ୍ର—ଆହୁରି ଅଛି ପରା, କହନ୍ତୁ କହନ୍ତୁ ।

ଦତ୍ତ—ଟଙ୍କା କଉଡ଼ି ଯାହା ଜବାବ ହେଲା, ସେଟା ଯେପରି ପୂର୍ବରୁ ଦେଣନେଣ ନିକାଶ ହୋଇଯିବ ।

୪ର୍ଥ ଭଦ୍ର—ଏ କଥା ଫେର କହିବାକୁ ଅଛି ? ଆଗେ ଟଙ୍କାଟା ହାତରେ ନ ପଡ଼ିଲେ ତ ସ୍ୱୀକାର କରିବା ଉଚିତ ନୁହେ ।

( ପୁରୋହିତଙ୍କର ମହାପ୍ରସାଦ ସହ ପ୍ରବେଶ ଓ ଦରହରଙ୍କରି ମହାପ୍ରସାଦ ଗ୍ରହଣ । )

ଦରୁ—ଆପଣଙ୍କ କନ୍ୟାଙ୍କ ସହିତ ଅମ୍ଭର ପୁଅର ବିବାହ ସମ୍ବନ୍ଧରେ ସ୍ଥିର ଜବାବ ଦେଲୁଁ ।

( ଗୋବନଙ୍କ ହସ୍ତକୁ ମହାପ୍ରସାଦ ପ୍ରଦାନ । )

ଗୋବ—ଆପଣଙ୍କ ପୁଅଙ୍କୁ ଅମ୍ଭର କନ୍ୟା ଦାନ କରିବାର ସ୍ଥିର ଜବାବ ଦେଲୁଁ ।

( ଦରହରଙ୍କ ହସ୍ତକୁ ମହାପ୍ରସାଦ ପ୍ରଦାନ, ପରସ୍ପରଙ୍କୁ ପୁଷ୍ପମାଳା ଓ ଚନ୍ଦନ ପ୍ରଦାନ ଏବଂ ଭଦ୍ରବ୍ୟକ୍ତିମାନଙ୍କୁ ମାଳା ଚନ୍ଦନ ପ୍ରଦାନ ।)

ପୁରୋହିତ—ମହାପ୍ରସାଦସେବାର ବନ୍ଦୋବସ୍ତ କରି ଯାଇଅଛି । କାଷ୍ଟତ୍ ମହାପ୍ରସାଦସେବାର ଅନୁମତି ହେଉ ।

୪ର୍ଥ ଭଦ୍ର—ଅତି ଉତ୍କୃଷ୍ଟ ପ୍ରସ୍ତାବ, ମହା ଆନନ୍ଦର ବିଷୟ, ଚାଲିବା ହେଉନ୍ତୁ । ପଟ୍ଟନାୟକ ବାବୁ ! ଆପଣଙ୍କୁ ଆଉ ଗୋଟିଏ କଥା କହୁଥାଏଁ—ଏପରି ସମୁଦ ଆଉ ପାଇବେ ନାହିଁ । ଆପଣ ହସାଉଯନ୍ତ୍ରଣାରୁ ଉଦ୍ଧାର ପାଇଯିବେ, ଭଯାଧୁତି ବଡ଼ ନିଶ୍ଚିନ୍ତ ହେଲି ।

( ସମସ୍ତଙ୍କର ପ୍ରସ୍ଥାନ । )



## ତୃତୀୟ ଦୃଶ୍ୟ ।

### ଚଉଧୁରୀଙ୍କ ଗୃହ ।

( ଚଉଧୁରୀ ଶ୍ୟାମସୁନ୍ଦର ମହାପାତ୍ର, ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ, କପିଳ ଓ ରଘବ । )

ଚଉ—ଗୋବିନ୍ଦ ବାବୁ ! ଆପଣ କାହିଁକି ଆସିଲେ ? ଆମ୍ଭେ ତ ଖବର ପଠାଇଥିଲୁଁ, ଆପଣ ଅନ୍ୟ ଚେଷ୍ଟା କରନ୍ତୁ, ଆମ୍ଭ ନିକଟରେ ବର୍ତ୍ତମାନ ଟଙ୍କା ସକଲ ହେବ ନାହିଁ ।

ଗୋବି—ଆପଣ କହିବାରୁ ମୁଁ ଜବାବ ଦେଲି, ଏତେବେଳେ ଏପରି କହୁଅଛନ୍ତି !

ଚଉ—ଆମ୍ଭେ ତେତେବେଳେ ନ ବୁଝି ନ ସୁଝି ଗୋଟାଏ କଥା ଦେଇଥିଲୁଁ, ଆପଣ ତ ଏତେ ଅଡ଼ୁଆ ରଖିଅଛନ୍ତି ।

ଗୋବି—ଆପଣ ଯାହା କହିବେ, ମୁଁ ହାଜର ଅଛି, ଏ ସମୟରେ ମୋତେ ହତାଶ କଲେ ମୁଁ ଏକାବେଳକେ ମନୁଷ୍ୟପଣରୁ ଯିବି । ଚଉଧୁରୀ ମହାଶୟ ! ମୁଁ ଆପଣଙ୍କର ହାତ ଧରୁଛି, ମୋତେ ଅନୁଗ୍ରହ କରନ୍ତୁ ।

ଚଉ—ଆପଣଙ୍କ ଉପରେ ଡିକ୍ରୀ ବାବତ୍ ପାଉଣା ରହିଲା, ହେଣ୍ଡନୋଟ ବାବତ୍ ପାଉଣା ଅଛି । ଆପଣଙ୍କ ପିତାଙ୍କର ଦସ୍ତଗରଦା ବାବତ୍ ପାଉଣା ଅଛି ।

ଗୋବି—ପିତାଙ୍କ ଦସ୍ତଗରଦା କଣ ମୁଁ ଆଦୌ ଶୁଣି ନାହିଁ ।

ଚଉ—ଆମ୍ଭେ କଣ ତେବେ ମିଥ୍ୟା କହୁଅଛୁଁ ?

ଗୋବି—ନା, ନା, ଆପଣ ମିଥ୍ୟା କହିବେ, ଏ କଥା କି ମୁଁ କହି ପାରେଁ ? ମାଫ କରିବାହେବେ, ମୋହର ବର୍ତ୍ତମାନ ବଡ଼ ଅସମର୍ଥ ।

ଚନ୍ଦ୍ର—ଆପଣଙ୍କର ଅସମର୍ଥ ହେଲେ ଅମ୍ଭେ କଣ କରିବୁଁ ? ଅମ୍ଭେ ତ ଅଜ୍ ଟଙ୍କାଗୁଡ଼ାକ ପାଣିରେ ପକାଇ ଦେବୁଁ ନାହିଁ ?

ଗୋବି—ନା, ନା, ପାଣିରେ କାହିଁକି ପକାଇ ଦେବେ ?

ଚନ୍ଦ୍—ତା ନୁହେ ତ ଆଉ କଣ ? କପିଳ ! ହିସାବ କରିବଟି; ପୂର୍ବ ବାବତ୍ ସମସ୍ତ ଅସଲ ଓ ସୁଧ ହିସାବ କର; ଉକ୍ତ ଟଙ୍କାର ତମସୁକଦ୍ୱାରରେ ସୁଧ ହିସାବ କରି ଉକ୍ତ ସୁଧ ବାଦ ଦେଇ ବାକି ନିଷ୍କି ସୁଧଟା ହିସାବରେ ଅଣିବ ।

କପିଳ—ଅଜ୍ଞା ।

( ହିସାବ କରିବାରେ ନିଯୁକ୍ତ । )

ଚନ୍ଦ୍—ଆପଣ ଜାଣନ୍ତି, ଅମ୍ଭର ସୁଧର ରେଟ ଶତକଡ଼ା ମାସକୁ ଟ ୪॥୵ରୁ କମ ନାହିଁ ? ମିଠେଇଖିଆ ଦସ୍ତାବଜ ଟଙ୍କାରୁ ବାଦ ଦେଇ ଯିବାକୁ ହୁଏ ।

ଗୋବି—ଇଚ୍ଛା ଆପଣଙ୍କର ।

କପି—ତାଙ୍କ ଉପରେ ସର୍ବମୋଟ ପୂର୍ବ ବାବତରେ ପାଉଣା ହେଲା ଟ ୧୬୫୮୪॥୵୬ ।

ଚନ୍ଦ୍—ଦେଖିଲେ ?

ଗୋବି—ଅଜ୍ଞା, ଅନେକ ଟଙ୍କା ଅସୁଲ ଦେଇଅଛୁ ।

ରଘୁ—ଯେଣ ଅସୂଲ ଦେଇଅଛନ୍ତି, ତାହା ତ ଆଉ ବର୍ତ୍ତମାନ ହିସାବ କରିବାର ସମୟ ନୁହେଁ; ଆପଣଙ୍କୁ ଆମ୍ଭେ ଟ୦ ୯୬ ଛାଡ଼ି ଦେଲୁଁ, ବାକି ଟ ୧୫୫୮୪ ଏବଂ ଏ ୨୦୦୦୦ ଟଙ୍କା ଏରୂପ ମୋଟ ଟ ୩୫୫୮୪ ଟଙ୍କା ନଗଦ ଦଏ ଜଲେ ବୋଲି ତମସୁକ ଲେଖାନ୍ତୁ, ଘର ବାଡ଼ି, ଜମିଦାରୀ, ଗୋବିନ୍ଦପୁର ମକଦମି ପ୍ରଭୃତି ସମସ୍ତ ସମ୍ପତ୍ତି ବନ୍ଧକ ରଖି ବନ୍ଧକ ଦସ୍ତାବିଜ ରେଜଷ୍ଟରୀ କରିଦେଉନ୍ତୁ, ତତ୍ପରେ ଦେଖାଯିବ । କପିଲ ! ଶେଷରେ ଦରକା ରହିବ—"ଏହିବାଏ"—ପୂର୍ବ ହେଣ୍ଡନୋଟ ଓ ତମ୍ସୀ ପ୍ରଭୃତିର ତାରିଖ ଦେଇ ଲେଖିବ,—"ଏସବୁ ବାବତ୍ ପାଉଣା ବାକି ରହିଲା ।"

ଗୋବି—ଆଜ୍ଞା ଏପରି ଗୋଟାଏ—

ରଘୁ—ଓଃ! ସେଥିରେ ଆପଣଙ୍କର ଖତି କଣ ? କେବଳ ଜାବଡ଼ା ସକାଶେ ଲେଖା ଯାଉଅଛି, ଆପଣଙ୍କର ଯେବେ ଆମ୍ଭ ଉପରେ କୌଣସି ପ୍ରକାର ଅବିଶ୍ୱାସ ହୁଏ, ତେବେ ଆପଣଙ୍କର ଆମ୍ଭ ସହିତ କାରବାର କରିବା ଆଦୌ ଉଚିତ ନୁହେ ।

ଗୋବି—( ସ୍ୱଗତ ) ହେ ଜଗଦୀଶ୍ୱର ! ମୁଁ କି ଦୁରବସ୍ଥାରେ ପଡ଼ିଅଛି, ଦେଖି ଦେଖି ଜାଣି ଜାଣି ହଳାହଳ ଭକ୍ଷଣ କରିବାକୁ ଯାଉଅଛି, ମୋହର ମନା କରିବାର ଶକ୍ତି ନାହିଁ । (ପ୍ରକାଶ୍ୟ) ରଘୁଧ୍ୱଜ ମହାଶୟ ! ଆପଣ ମୋହର ମୁରବି, ଆପଣଙ୍କଠାରେ ମୋହର କଣ୍ଠମାତ୍ର ଅବିଶ୍ୱାସ

ନାହିଁ, ମୁଁ ଭଗବାନଙ୍କୁ ସାକ୍ଷୀ ରଖି ଆପଣଙ୍କ ଉପରେ ସର୍ବ ପ୍ରକାରେ ନିର୍ଭର କରିଅଛି, ଆପଣ ଏ ସମୟରେ ଯାହା କହିବେ, ମୁଁ ତାହା କରିବାକୁ ବାଧ୍ୟ । ଅଧିକ ଆଉ କଣ କହିବି ? (ସ୍ୱଗତ) ହେ ଭଗବନ୍ ! ଆପଣ ମନୁଷ୍ୟ ମଧ୍ୟରେ ଏତେଦୂର କଠିନ ହୃଦୟ ସୃଜନ କରିଅଛନ୍ତି ! ଓହୋ ! ଜଗତରେ କନ୍ୟାଦାୟ ସମାନ ଆଉ ବିପଦ ନାହିଁ, ସମାଜରେ କନ୍ୟାପିତାଠାରୁ ଅଧିକ ବିପନ୍ନ ବ୍ୟକ୍ତି ମୋହର କେବେ ଦୃଷ୍ଟିଗୋଚର ହୋଇ ନାହିଁ; ମନୁଷ୍ୟର ଦମ୍ଭ, ଅଭିମାନ, ଗର୍ବ ଓ ଅହଙ୍କାର ସମସ୍ତ ଚୂର୍ଣ୍ଣ କରିବା ଉଦ୍ଦେଶ୍ୟରେ ବୋଧହୁଏ ବିଧାତା କନ୍ୟାର ସୃଷ୍ଟି କରିଅଛନ୍ତି ।

କପି—ଦସ୍ତାବଜ ଚଠା କରୁଛ ?

ଗୋବି—କର ।

( ଅଭିବାଦନ ଓ ପ୍ରସ୍ଥାନ, ଚଉଧୁରୀଙ୍କର ମଧ୍ୟ ପ୍ରସ୍ଥାନ । )

କପି—ରାଘବ ଭାଇ, ଶୀଘ୍ର ଶୀଘ୍ର କାମଟା କରିନବା ଦରକାର ।

(ପଟକ୍ଷେପଣ ଦୃଶ୍ୟ ଓ ମୂଷର ଲକ୍ଷିତଭାବ କଥୋପକଥନ ଏବଂ ପ୍ରସ୍ଥାନ ।)



## ଚତୁର୍ଥ ଦୃଶ୍ୟ ।

### ବକ୍ତ୍ରଧର କାନୁନଗୋଙ୍କ ଗୃହ ।

(ବକ୍ତ୍ରଧର କାନୁନଗୋ ଏବ ସ୍ୱରୂପ । )

ବକ୍ତ୍ର—କଣ ? ଖବର କଣ ? ଟଙ୍କା ଆଣିଛ ?

ସ୍ୱରୂ—ଆଜ୍ଞା ନାହିଁ, ଟଙ୍କା ଆଣି ନାହିଁ । ଦୁଇ ତିନ ଦିନ ମଧ୍ୟରେ ସମସ୍ତ ଟଙ୍କା ଦାଖଲ କରି ଯିବ । ତାଙ୍କ ଦସ୍ତାବିଜ ଲେଖା ପଢ଼ା ହୋଇ ଯାଇଅଛି । ରେଜେଷ୍ଟରୀ ହୋଇଗଲେ ମହାଜନ ଟଙ୍କା ଦେବେ । ଆପଣ ଟଙ୍କା ସମ୍ବନ୍ଧରେ କୌଣସି ସନ୍ଦେହ କରିବେ ନାହିଁ ।

ବକ୍ତ୍ର—ଦେଖ, ତୁମ୍ଭର ପଟ୍ଟନାୟକଙ୍କୁ କହିଦେବ, ଆମ୍ଭେ କିଛି ତାଙ୍କ ଘରକୁ ଖୋଜି ଯାଇ ନ ଥିଲୁଁ, ସେ ଆମ୍ଭ ଘରକୁ ଆସିଥିଲେ । ଆମ୍ଭ ଦ୍ୱାରରେ ମହାମହାଲୋକମାନେ ଧାରଣା ଦେଇ ଯାଉଅଛନ୍ତି । ଦୁଇ ଦିନ ମଧ୍ୟରେ ଟଙ୍କା ନ ପହଞ୍ଚିଲେ ଆମ୍ଭେ ଅନ୍ୟ ସ୍ଥାନରେ ଜବାବ ଦେବୁଁ ।

ସ୍ୱରୂ—ଆଜ୍ଞା, ଅନ୍ୟ ସ୍ଥାନରେ କାହିଁକି ଜବାବ ଦେବେ ? ସେଟା କଣ ଭଲ କଥା ହେବ ? ମହାପ୍ରସାଦ ଛେକ ଦେଇଅଛନ୍ତି, ଲୋକେ ଶୁଣିଲେ କଣ କହିବେ ?

ବକ୍ତ୍ର—ହଁ, ବୁଝାଗଲା, କୌଶଳ କରି ମହାପ୍ରସାଦଟା ଉଠାଇ ନେଇଅଛନ୍ତି ବୋଲି ପଟ୍ଟନାୟକଙ୍କ ମନରେ ଭାବ ଗୋଟାଏ ହମ୍ଭ ହୋଇ ଯାଇଅଛି । ତୁମ୍ଭଙ୍କୁ ଅମ୍ଭେ ସ୍ପଷ୍ଟ କଥା କହୁଅଛୁଁ, ପଟ୍ଟନାୟକଙ୍କୁ କହିଦେବ, ମହାପ୍ରସାଦଟା

ଉଠାଇ ଦେଉଅଛୁଁ ବୋଲି ଆମ୍ଭର ମୁଣ୍ଡିଆ ପଟ୍ଟନାୟକଙ୍କୁ ବିକ୍ରୟ କରି ଦେଇ ନାହୁଁ । ମହାପ୍ରସାଦ ଉଠାଇବା ସମୟରେ ଆମ୍ଭେ ସମସ୍ତ ସର୍ତ୍ତଗୁଡ଼ିକ ମନେ ମନେ ସ୍ମରଣ କରି ମହାପ୍ରସାଦ ଉଠାଇଅଛୁଁ । ମହାପ୍ରସାଦ ଧରି ମଧ୍ୟ ସଙ୍କଳ୍ପ କରିଅଛୁଁ ଯେ, ଜବାବ ମୁତାବକ ଦେବା ନେବାରେ ଢଳେମାନ ତ୍ରୁଟି ହେଲେ ଆମ୍ଭେ ବେଦଲୁ ପର୍ଯ୍ୟନ୍ତ ବର ଉଠାଇ ଆଣିବୁଁ । ତେଣିକି ମହାପ୍ରସାଦ ଲଙ୍ଘନର ଅପରାଧ ପଟ୍ଟନାୟକଙ୍କର, ଆମ୍ଭର ନୁହେ । ପଟ୍ଟନାୟକଙ୍କୁ ତୁମ୍ଭର କହିଦେବ, ତୁମ୍ଭ କଥା ମୁତାବକ ଆମ୍ଭେ ଆଜ ଦୁଇ ଦିନ ଅପେକ୍ଷା କରିବୁଁ । ଯେବେ ଦୁଇ ଦିନ ମଧ୍ୟରେ ଜବାବ ମୁତାବକ ନଗଦ ଟଙ୍କା-ଗୁଡ଼ିକ ନ ପହଞ୍ଚେ, ତେବେ ନିଶ୍ଚୟ ନିଶ୍ଚୟ ଆମ୍ଭେ ଅନ୍ୟ ସ୍ଥାନରେ ଜବାବ ଦେବୁଁ । ଆମ୍ଭର ଜବାବ ଗୋଟାଏ, ଜବାବ ଦୁଇଟା ନୁହେ ।

ସଚ—ମୁଁ ଯାଉନ୍ତୁ, ଆପଣଙ୍କ ଆଦେଶମତେ ଦୁଇ ଦିନ ମଧ୍ୟରେ ଟଙ୍କା ସେନ ଉପସ୍ଥିତ ହେବ । ଦୁଇ ଦିନ ଅପେକ୍ଷା କରନ୍ତୁ, ତତ୍ପରେ ଯାହା କରିବେ ।

ଦତ୍ତ—ଆଚ୍ଛା, ଯାଅ ।

(ସଭାର ଅଭିବାଦନ ଓ ପ୍ରସ୍ଥାନ)



## ପଞ୍ଚମ ଦୃଶ୍ୟ ।

### ଚନ୍ଦ୍ରଧ୍ୱଜଙ୍କ ଗୃହର ବହିର୍ଭାଗ ।

(ଉନ୍ମାଦିନୀ ତରଙ୍ଗିଣୀର ପ୍ରବେଶ)

ତରଙ୍ଗିଣୀ—ଅର୍ଥ ପିପାସା ! ବଡ଼ ପିପାସା ! ଭାରି ପିପାସା ! ସେ ପିପାସାର ଶାନ୍ତି ନାହିଁ ! ସେ ପିପାସାର ଶେଷ ନାହିଁ ! ସେ ପିପାସାରେ ମନୁଷ୍ୟ ଅନ୍ଧ ହୁଏ ! ମନୁଷ୍ୟ ଜ୍ଞାନଶୂନ୍ୟ ହୁଏ ! ମନୁଷ୍ୟ ପାଗଳ ହୁଏ ! ଟଙ୍କା ! ଟଙ୍କା ! ଟଙ୍କା ! ଜଗତରେ ମାତା ନାହିଁ, ପିତା ନାହିଁ, ପୁତ୍ର ନାହିଁ, କନ୍ୟା ନାହିଁ, ବନ୍ଧୁ ନାହିଁ, ସବୁ ଅର୍ଥ ! ସବୁ ଅର୍ଥ ଅପେକ୍ଷା ନିକୃଷ୍ଟ ! ବିଷ ! ବିଷ ! ବିଷ କାହିଁ ? ବିଷ କାହିଁ ମିଳେ ? ବିଷ କାହୁଁ ପାଇବି ? ମୋତେ ବିଷ କିଏ ଦେବ ?

(ଚମ୍ପାର ପ୍ରବେଶ ଓ ତରଙ୍ଗିଣୀଙ୍କୁ ଧାରଣ)

ଚମ୍ପା—ତୁମେ ଆସି ଏଠି ଉଠିଲଣି ? ମୁଁ ଖୋଜି ଖୋଜି ଥକିଲିଣି ।

ତର—ଚମ୍ପା ! ବିଷ କଣ ମାତାଙ୍କ ଗର୍ଭରୁ ଜାତ ହୁଏ ? ମୁଁ ପୁନର୍ବାର ମାତାଙ୍କ ଗର୍ଭରେ ପ୍ରବେଶ କରନ୍ତି, ସେଠାରେ ବିଷ ଭକ୍ଷଣ କରନ୍ତି । ତୁ ମତେ ଛାଡ଼ ।

ଗୀତ ।

ମୁଁ ଯେ ବିଷ ଶୋକର ବିଷ ଭୁଞ୍ଜିବି,
(ମୋର) ବିଷରେ ଅଣ ରହିଗଲା ।
ବିଷ ନ ମିଳଲେ କିସ ମୁଁ କରିବି,
ଧରୁଛି ତୋ ପଦ କହ ବଲା ।
ବିଷ ଖାଇ ମୋର ପ୍ରାଣ ଗଲା,
(ପୁଣି) ବିଷପାଇଁ ମୋର ପ୍ରାଣ ଗଲା ।

ଅହା ! ମୋ ଜୀବନସଙ୍ଗିନି ଚମ୍ପାବତି ! ତୁ ମୋର ମାତା, ତୁ ମୋର ପିତା, ତୁ ମୋର ଭଗିନୀ, ତୁ ମୋର ପୁତ୍ର, ତୁ ମୋର କନ୍ୟା, ତୁ ମୋର ଭ୍ରାତା, ତୁ ମୋର ସ୍ୱାମୀ—ହା ! ହା ! ହା ! ହା ! ମୋର ପ୍ରାଣପକ୍ଷି ଲୋ ! ତୁ ମୋର ଶତ୍ରୁ, ତୁ ମୋର ଯନ୍ତ୍ରଣା, ତୁ ମୋର ରୋଗ, ତୁ ମୋର ଶୋକ, ତୁ ମୋର ପଶ୍ଚାତାପ, ତୁ ମୋର କାଳଦୂତ ! ତୁ ମୋର କାଳଦଣ୍ଡ ! ତୋର ମୃତ୍ୟୁ ହେଲେ ମୋର ମୁକ୍ତି ହେବ, ତୁ ମଲେ ମୁଁ ଶାନ୍ତିଲାଭ କରିବି ! ମୁଁ ବୁଝିଛି, ମୋର ପୂର୍ବଜନ୍ମରେ ଅଶେଷ ପାତକ ଥିଲା, ସେହି ପାତକର ଶାସ୍ତି ନିମନ୍ତେ ଧର୍ମରାଜ ତୋତେ ନିଯୁକ୍ତ କରିଛନ୍ତି । ଯା, ଅର୍ଥଭୋଗ କର, ପିତା ଅର୍ଥ ଲୋଭରେ ବିଷପ୍ରୟୋଗ କଲେ, ତୁ ଅର୍ଥ ନେ, ମୋର ସର୍ବସ୍ୱ ନେ, ମୋତେ କଣିକାମାତ୍ର ବିଷ ଆଣିଦେ ଲୋ !

(ଉନ୍ମତ୍ତ ଅବସ୍ଥାରେ ଚମ୍ପାର ଗଡଦେଶରେ ମସ୍ତକ ସ୍ଥାପନ)

ଚମ୍ପା—ଏଣିକି ମୁଁ ଆଉ ସମ୍ଭାଳି ପାରିବି ନାହିଁ । ଏ ଭି ଦିନକୁ ଦିନକୁ ବେଶି ବାଢ଼ୁଆଣୀ ହେଲେ, ମୁଁ କେତେ ଜଗିବି, କଣ କରିବି ! ପିତା ଅର୍ଥଲୋଭରେ ନିଜର ଝିଅ ବୋଲି ଚାହିଁଲେ ନାହିଁ, ଅପଣାର ଜୋଇଁଟାକୁ ବିଷ ଦେଇ ଜୀବନ ନେଲେ, ଗୋଟାଏ ଉଇଲ ଜାଲ କରି ଏବେ ଅତୁଳ ସମ୍ପତ୍ତିର ମାଲିକ ହୋଇ ବସିଲେ । ଭଲେ ବାପ ! ଏ କଥା ଫେର ତାଙ୍କୁ କଏ କହିବ ! ଶାମଦାସ ଥିଲେ, ଏବେ ପୁଣି—'ଚଉଧୁରୀ', ଫେର 'ଶାମସୁନ୍ଦର', ଫେର 'ବାପ',ଫେର 'ମାହାପାତ୍ର' ବୋଲେଇଲେ ! ମୁଁ ଏବେ ଯାଙ୍କୁ ନେଇ କଣ କରିବି ! ଜନମରୁ ଦାନା ଖାଉଛି, କି ସମ୍ପଦବେଳେ କି ବିପଦବେଳେ, ଦିନେ ଦାସୀ ବୋଲି ଜାଣେ ନା । ହାୟରେ ସଂସାର ! କି କୌତୁକ ଲାଗିଛି ! ଜୋଇଁଟାର ମରବପଣିଆ ଢଲ, ତାର ସର୍ବସ୍ୱ ଖାଇଲ, ତେବେ ଅଣ୍ଟିଲା ନାହିଁ, ତା ଜୀବନଟା ବି ନେଲ ! ଓହୋ ! କି ପାଷାଣ ହୃଦୟ ତୁମର ! ରହିବା ମଧ୍ୟରେ କେବଳ ତାହାର ଭାରିଯାଟି, ସେ ଫେର କେହି ନୁହେ ! ହେ ଭଗବାନ୍ ! ତୁମେ ଜଗତରେ ଅର୍ଥ ବୋଲି କି ପଦାର୍ଥ ଗୋଟାଏ ସୃଷ୍ଟି କରିଛି !

ଗୀତ ।

ଅର୍ଥ ପିପାସାର ଶାନ୍ତି ନାହିଁ ଏ ଭୁବନ ।
ଅର୍ଥହିଁ ତା ଜ୍ଞାନ ଧ୍ୟାନ ଅର୍ଥ ତା ଜୀବନ ।

ଅର୍ଥଲୋଲୁପ ଯେ ଜନ,
ଅର୍ଥଲୋଭେ ଯେ ଅଜ୍ଞାନ,
ତା ପାଶେ ସବୁ ସମାନ ପର କି ଆପଣ ।
ଭାଇ ବନ୍ଧୁ ଆଦି କରି
ନିଜ ଦାରା ସୁତ ଅରି
ଧଣସ୍ପୃମସ୍ତୁ ତା ପ୍ରାଣ ଧଣସ୍ତୁ ନ୍ୟୂନ ।

(ପଟକ୍ଷେପ)



# ଦ୍ୱିତୀୟ ଅଭିନୟ ।



## ପ୍ରଥମ ଦୃଶ୍ୟ ।

ପଞ୍ଚନାୟକଙ୍କ କନ୍ୟା କୁନ୍ତଳାର କକ୍ଷ ।

( କୁନ୍ତଳା )

କୁନ୍ତଳା—ଆହା ! ଜଗତରେ ମୋ ପରି ହତଭାଗିନୀଙ୍କର ସଂଖ୍ୟା କେତେ, ତାହା ମୁଁ ଜାଣେ ନାହିଁ । ମୁଁ, କି ଅଲକ୍ଷଣୀ ! ଜନନୀ ଗର୍ଭଧାରଣ କରି କି ଅସହ୍ୟ ଯନ୍ତ୍ରଣା ଭୋଗ କରି ନାହାନ୍ତି ! ପିତା ମାତା ଉଭୟେ କେତେ କଷ୍ଟରେ ମୋତେ ଲାଳନ ପାଳନ କରି ନାହାନ୍ତି ! ସେମାନଙ୍କର ସ୍ନେହ ! ସେମାନଙ୍କର ଯତ୍ନ ! ଆହା ! ଜଗତରେ ଜନ୍ମଗ୍ରହଣ କରି ପିତା ମାତାଙ୍କର ଋଣ କିଏ ପରିଶୋଧ କରି ପାରିବ ? ମୁଁ ପାପୀୟସୀ କି ପିଶାଚୀ ! ମୁଁ ସୁଖୀ ହେବି, ପିତା ମାତା ସର୍ବସ୍ୱ ହରାଇ କାଙ୍ଗାଳ ହେବେ ! ମୋତେ ସୁଖୀ କରିବା ଆଶାରେ ପିତା ରଉଧୂରିଙ୍କ ନିକଟରେ ବିଷୟ ସମ୍ପଦ ସମସ୍ତ ବିକିଦେବେ ! ଏ କଥା ଶୁଣିଲା ବେଳକୁ ମୋ ହୃଦୟ ବିଦୀର୍ଣ୍ଣ ହେଉଅଛି । ରଉଧୂରି ନିଷ୍ଠୁର ପାଷଣ୍ଡ ବ୍ୟକ୍ତି ! ବିଷୟଲୋଭରେ ନିଜ କନ୍ୟାର ସୁଦ୍ଧା ଭବିଷ୍ୟତ୍ ଚିନ୍ତା କଲା ନାହିଁ । ପାପିଷ୍ଠ ଅକିଞ୍ଚନ ବ୍ୟକ୍ତି ଥିଲା, ଜାମାତାର

ଅର୍ଥରେ ମନୁଷ୍ୟ ହେଲ, ପୁଣି ଅର୍ଥଲୋଭରେ ସେହି ହତଭାଗ୍ୟ ଜାମାତାର ପ୍ରାଣ ସଂହାର କଲା ! ସେହି ହୃଦୟହୀନ ପାପିଷ୍ଠ ହସ୍ତରେ ମୋର ପିତା ସମସ୍ତ ସମ୍ପଦ ଓ ନିଜର ଶରୀର ପର୍ଯ୍ୟନ୍ତ ଅବଦ୍ଧ ରଖି ମୋତେ ସୁଖୀ କରିବାକୁ ଚେଷ୍ଟା କରୁଅଛନ୍ତି ! ମୁଁ ଏଥିରେ ସୁଖୀ ହେବି ! ଏହି ଭାବନା ଯେ ମୋତେ ଚିରଦୁଃଖିନୀ କରିବ, ପିତାଙ୍କର ତାହା ସ୍ମରଣ ହେଉ ନାହିଁ ।

(ସଖୀମାନଙ୍କର ପ୍ରବେଶ)

ଗୀତ ।

ଯୁବତୀର ପ୍ରେମତରଣୀ ଖଣ୍ଡିକ
ଭାସଇ ଅକୂଳ ସାଗରେ ।
ପ୍ରେମିକ ଯୁବକ ନାବିକ ବିହୁନେ
ଖେଳଇ ତା ମତ ଗଗନେ ଗଗନେ,
ଅନ୍ଧକାର ସେହି ଦେଖେ ତ୍ରିଭୁବନେ,
କେ ଆଣିବ ତାକୁ ପାଥରେ ।
ନାଉରୀ ନାଗର ନୟନେ ନୟନ
ନ ମିଳିବା ଯାଏ ତା ଦଶା ଏସନ,
କହ ଲୋ ସଜନ, ଏଥିକୁ ବିଧାନ,
(ସଖୀ) ସରିଲାଣି ତ ସନ୍ତାପରେ ।

୧ମ ସଖୀ—ସଜନ ଗୋ ! ତୁମେ ଏକା ଏକା ବସି ଏତେ ଭାବୁଛ କଣ ?

୨ୟ ସଖୀ—ବାପଘର ଠିକଣା ହେଲା, ଦିନ ବାର ଧରିଗଲା, ଏବେ ତ ଗୋଡ଼ ତଳେ ଲଗୁ ନ ଥାନ୍ତା, ଆଉ ତମର ଏପରି ଓଲଟା କଥା କାହିଁକି ? କୋଉଁ କଥାକୁ ଏତେ ଭାବନା, କହିଲ ?

୧ମ ସଖୀ—ବରକୁ ତ ଅମେ ଦେଖି ଅସିଲୁଁ, କେଡ଼େ ଶୋଭା-କାର ବର ।

୩ୟ ସଖୀ—ବର ତମର ବି. ଏ. ପାସ କରିଛନ୍ତି, କାଲି ସକାଳେ ଦିପୋଟି ହେବେ, ତୁମେ ଦିପୋଟିଅଣୀ ହବ, ଆଉ ତମର କୋଉଁ କଥାରେ ଊଣା ହେଲା ବୋଲି ଏତେ ଭାବୁଛ, କହିଲ ?

୪ର୍ଥ ସଖୀ—ଛି ! ଆଉ ମନ ଊଣା କର ନା, ଲୋକେ ଶୁଣିଲେ କଣ କହିବେ ? ଅସ, ଅମ ସଙ୍ଗରେ ଅସ ; ତମ ମନଟି ଊଣା ଦେଖିଲେ ଆଉ କାହାର ମନ କୋଉଁ କଥାରେ ଲାଗୁ ନାହିଁ, ମା ତ କେତେ ଦିନ ହେଲା ଦାନା ଛାଡି ଦେଲେଣି । ତାଙ୍କ ମନରେ ଭାବନା, ଝିଅର ଆଉ କୋଉଁ କଥାରେ ଊଣା ହେଲା ବୋଲି ଝିଅ ମୁହଁ ଶୁଖେଇଛି ।

୨ୟ ସଖୀ—ଅସ, ଅମ ସଙ୍ଗରେ ଅସ, ଏଠି ଏକାଟିଆ କାହିଁକି ବସିଛ ?

କୁନ୍ତଳା—ସଜନି ! ତୁମେ ସବୁ ଚାଲ, ରମ୍ଭା ଥାଉ, ଟିକାଏ ଛାଡ ମୁଁ ରମ୍ଭା ସଙ୍ଗରେ ପଛେ ହୋଇ ଯିବି ।

ଅନ୍ୟ ସଖୀ—ହଉ, ତେବେ ରମ୍ଭା ତୁ ଥା, ତୋ ସଙ୍ଗରେ ତ ଭରି ମନ ମିଳେ, ତୁ ତ କୁଆଡ଼େ ଯଉତୁକରେ ଯିବୁ । ହଉ ତେବେ ଆମେ ଯାଉଛୁଁ, ତୁମେ ଆସ ।

(ରମ୍ଭା ଛଡ଼ା ଅନ୍ୟ ସଖୀମାନଙ୍କର ପ୍ରସ୍ଥାନ)

କୁନ୍ତଳା—(ସ୍ୱଗତ) ପିତା ମାତା ଜନ୍ମ ଦେଇଅଛନ୍ତି ସତ୍ୟ, କିନ୍ତୁ ମୋ କର୍ମ ଉପରେ ସେମାନଙ୍କର କିଞ୍ଚିନ୍ମାତ୍ର ଅଧିକାର ନାହିଁ । ମୋ ଭାଗ୍ୟରେ ଯେବେ ଦୁଃଖିନୀ ହେବାକୁ ଥିବ, ମୋ କର୍ମରେ ଯେବେ ଲେଖା ଥିବ ଯେ ମୁଁ ଭିଖାରିଣୀ ହେବି, ତେବେ ପିତା ମାତା ଯେତେ ଯାହା କରନ୍ତୁ, ମୋ କର୍ମଲେଖା କେବେହେଁ ଫେରାଇ ପାରିବେ ନାହିଁ । ତେବେ ଅକାରଣରେ ଘର ଦ୍ୱାର ଓ ଧନ ସମ୍ପଦ ଆଉ ନିଜର ଜୀବନ ପର୍ଯ୍ୟନ୍ତ ଅବଦ୍ଧ ଦେଲେ କି ଫଳ ଫଳିବ ? ପିତା ମାତାଙ୍କର କୋଳରେ ଲାଳିତ ପାଳିତ ହୋଇ ଏକାଳକୁ ମୁହିଁ ସେମାନଙ୍କର କାଳକଣ୍ଟକ ହେବି ! ଏହା ମୋ ପ୍ରାଣରେ ସହ୍ୟ ହେବ ନାହିଁ । ବରଂ ମୋର ବିବାହ ନ ହେଉ, ମୁଁ ଚିର-କୁମାରୀ ହେବି, ଚିରଦିନ ଦୁଃଖରେ ଜୀବନ କଟାଇବି, ଭିଖାରିଣୀ ହୋଇ ଭିକ୍ଷାନ୍ନ ଭୋଜନରେ ଦିନ ନେବି, ମାତ୍ର ପିତା ମାତାଙ୍କୁ ସଙ୍କଟାପନ୍ନ କରି ଚିରସୁଖୀ ହେବି ନାହିଁ । ମୋର ଦପୋଷିଣୀ ହେବାର ପ୍ରୟୋଜନ ନାହିଁ । ଯେବେ ପିତା ମାତା ଏଥିରେ ଅସମ୍ମତ ହେବେ, ତେବେ ବିଷ ଖାଇ ଇହଜନ୍ମ ଶେଷ କରିବି, ଆତ୍ମହତ୍ୟା କରି ଏହି ଜଞ୍ଜାଳ ନିବାରଣ କରିବି ।

ରମ୍ଭା—କଣ ଏତେ ଭାବୁଛ ? ଏଥର ଆସ ।

କୁନ୍ତଳା—ରମ୍ଭା ଲୋ ! ତତେ ଗୋଟିଏ କଥା କହିବ, ତୁ ଯା ମାଙ୍କୁ କହିବୁ , ମୁଁ ବିଭା ହେବି ନାହିଁ ।

ରମ୍ଭା—ଏଇଁ ? କଣ କହୁଚ ? ଯା ନା ଗୋଟାଏ କଥା ? ବାହା ହବ ନାହିଁ ? ସବୁଅଡ଼ୁ ସବୁ ହେଲା, ତୁମେ ଝିଅଟା, ଏମିତି କଥା କହୁଚ ! ମୁଁ ଯା ଗୋଟାଏ କେମିତି ମାଙ୍କୁ କହିବ ?

କୁନ୍ତଳା—ହିଁ, ତୁ ମାଙ୍କୁ କହିବୁ, ତୋ ହାତ ଧରୁଛି, ତୁ ଯା ମାଙ୍କୁ କହିବୁ ।

ରମ୍ଭା—ତୁମେ କଣ ବାମ୍ଭାଣୀ ହେଲ ? ମା ପଚାରିବେ, କାହିଁକି ? ମୁଁ କଣ କହିବ ? ମତେ ଏ କଥା ଭଲ ଲାଗୁନାହିଁ ।

କୁନ୍ତଳା—ତତେ ଭଲ ଲାଗୁ ବା ମନ୍ଦ ଲାଗୁ, ତୁ ଶୀଘ୍ର ଯା, ମାଙ୍କୁ କହ । ଅଉ କହିବୁ—ମୋ ସହିତ ଯିଏର କଲେ ମୁଁ ଆତ୍ମହତ୍ୟା କରିବ, ପ୍ରାଣ ହରାଇ ଦେବ ।

ରମ୍ଭା—କାହିଁକି ଗୋ ! ଯା ନା ଗୋଟାଏ କଥା ! ବାହା ନ ହେଲେ ନ ହେବ ପଛକେ, ଜୀବନ କାହିଁକି ହରାଇ ଦେବ ? ମୁଁ ଯାଉଛି, ଏଇକ୍ଷଣି ମାଙ୍କୁ କହିବ ।

( ରମ୍ଭାର ପ୍ରସ୍ଥାନ )

କୁନ୍ତଳା—(ସ୍ୱଗତ) ଏହି ମୋର ସ୍ଥିର ସଂକଳ୍ପ, ମୁଁ ବିବାହ କରିବି ନାହିଁ । ଯେଉଁ ଉଚ୍ଚ ଶିକ୍ଷାପ୍ରାପ୍ତ ଯୁବକ ବିବାହବେଦୀରେ ମୂଲ୍ୟପ୍ରାପ୍ତି ଆଶାରେ ଆତ୍ମବିକ୍ରୟ କରିବାକୁ ଉଦ୍ୟତ,

## ସଦାଚରଣ ନାଟକ ।

ସେରୂପ ଯୁବକଙ୍କୁ ବିବାହ କରିବି ନାହିଁ । ପିତା ମାତାଙ୍କର ସୌଭାଗ୍ୟ ବିକ୍ରୀତ ହୋଇ ମୋର ଭବିଷ୍ୟତ୍ ଭାଗ୍ୟ କ୍ରୀତ ହେବ, ଏହା ମୁଁ ଏ ଜୀବନରେ ଦେଖିବି ନାହିଁ । ବରଂ ଆତ୍ମହତ୍ୟା କରି ଜୀବନ ବିସର୍ଜନ କରିବି । ମୋର ଜୀବନବିସର୍ଜନରେ ଯେବେ ହୃଦୟହୀନ ଯୁବକମାନଙ୍କର ହୃଦୟସଞ୍ଚାର ହୁଏ ।

### ଗୀତ ।

ଉଦାରହୃଦୟ ବିଶ୍ୱପାତା ବିଶ୍ୱବ୍ରହ୍ମାଣ୍ଡକାରଣ,
ହୃଦୟହୀନ ଯୁବକ ପରାଣେ ହୃଦୟ କର ସୃଜନ ।
ଦିନୁଁ ଦିନୁଁ ଯେତେ ଶିକ୍ଷାର ଉନ୍ନତି,
ସଙ୍ଗେ ସଙ୍ଗେ କିମ୍ପା ବଳଇ ଏ ମତି,
ଲଭିଲା ସମାଜ ଏ ସମ ଦୁର୍ଗତି
ଫେରାଅ ଏ ଗତି ଅଶେଷ ଦୁରିତନାଶନ !

ସମାଜ ବନ୍ଧନେ ପଡ଼ି ଶତ ଶତ
କନ୍ୟାପିତାଗଣ ହେଲେ ସର୍ବସ୍ୱାନ୍ତ,
ଶିକ୍ଷା ସଙ୍ଗେ ସଙ୍ଗେ ଏ କି ବିପରୀତ,
ସମାଜର ହିତ ନ ଭାବନ୍ତି କେହି ଜନ ।



## ଦ୍ୱିତୀୟ ଦୃଶ୍ୟ ।

### ଯୁବକ-ସମିତି ।

( ସଭାପତି ଓ ସଭ୍ୟଗଣ ଆସୀନ )

୧ମ ସଭ୍ୟ—ସମାଜସଂସ୍କାର ଆମ୍ଭମାନଙ୍କ ସମିତିର ଉଦ୍ଦେଶ୍ୟ-ମାନଙ୍କ ମଧ୍ୟରେ ଗୋଟିଏ ପ୍ରଧାନ ଉଦ୍ଦେଶ୍ୟ । ସମାଜରେ ଯେତେପ୍ରକାର କୁସଂସ୍କାର ବର୍ତ୍ତମାନ ଲକ୍ଷିତ ହୁଏ, ତହିଁ ମଧ୍ୟରେ ବୈବାହିକାଳୀନ ଅପବ୍ୟୟ ଗୋଟିଏ ଅନିଷ୍ଟକର କୁପ୍ରଥା । "ବିବାହର ବ୍ୟୟସଙ୍କୋଚ" ଅଦ୍ୟ ଆମ୍ଭମାନଙ୍କର ବିଚାର୍ଯ୍ୟ ବିଷୟ । ଆମ୍ଭେମାନେ ଦେଖୁଅଛୁଁ, ବର୍ତ୍ତମାନ କନ୍ୟାବିବାହ ସମାଜରେ ଗୋଟିଏ ବିଷମ ସଙ୍କଟ ହୋଇ ଉଠିଅଛି । ପୁତ୍ରବିବାହକୁ ତ କେହି ସେପରି ଚକ୍ଷୁରେ ଦେଖନ୍ତି ନାହିଁ । ବିବାହକାଳରେ ବରପିତା ଓ କନ୍ୟାପିତା ଦୁହିଙ୍କ ପ୍ରତି ଦୃଷ୍ଟିପାତ କର, ଦେଖିବ, ବରପିତାଙ୍କର ଆନନ୍ଦର ସୀମା ନାହିଁ, ଅଥଚ କନ୍ୟାପିତା ଚିନ୍ତାରେ ଚିନ୍ତାରେ ଅର୍ଦ୍ଧମୃତ ହୋଇ ରହିଅଛନ୍ତି । ତାଙ୍କ ମୁଖରେ ହର୍ଷର ଚିହ୍ନମାତ୍ର ନାହିଁ । ହୋହୋଉତ୍ସବଟା ଖୋଲ ଅଣାରେ ତାଙ୍କର ଗୃହରେ, ଅଥଚ ସେ ନିରାନନ୍ଦମୟ । ଏହାର କାରଣ କଣ ? ତାଙ୍କୁ ପ୍ରଶ୍ନ କର, ବୁଝିବ ଯେ, ବରର ମୂଲ୍ୟ ଗୃହ ପାଞ୍ଚ ହଜାର ଦେବାକୁ ପଡ଼ିଲା । ଏହା ଛଡ଼ା ଅଳଙ୍କାର ଓ ବିବାହର ଅନ୍ୟ ଖର୍ଚ୍ଚ ସବୁ ଅଛି । ଜମିଦାରୀ, ମକଦମି,

ଗୃହ, ବାସ, ଲକ୍ଷରାଜ, ଖାନାବାଡ଼ି, ଯାହା କିଛି ଥିଲା, ସମସ୍ତ ବନ୍ଧକ ଦେଇଅଛନ୍ତି । ମହାଜନ ପରି ଦସ୍ୟୁକ୍ତ ବ୍ୟକ୍ତି, ସମସ୍ତ ବୁଝି ମିଠେଇଖିଆଠାରୁ ସୁଧର ରେଟ ଓ ତମସୁକର ସର୍ତ୍ତ ପ୍ରଭୃତି ସର୍ବପ୍ରକାରେ କଷି ଦେଇଅଛନ୍ତି । ଏ ଜନ୍ମରେ ପୈତୃକ ସମ୍ପତ୍ତିଗୁଡ଼ିକର ପୁନରୁଦ୍ଧାର ହେବ, ସେ ଭରସା ନାହିଁ । ଏ ଦୁର୍ଗତିର ମୂଳ କିଏ ? ଏ ଦୁର୍ଦ୍ଦଶାର ମୂଳ ଅମ୍ଭେମାନେ । ଏ ଦୁର୍ଦ୍ଦଶାର ମୂଳ ଶିକ୍ଷିତ ଯୁବକଶ୍ରେଣୀ । ଅମ୍ଭେମାନେ ଉଚ୍ଚ ଶିକ୍ଷା ଲାଭ କରି ସମାଜର ଶ୍ରୀବୃଦ୍ଧି କରିବା ତେଣିକି ଥାଉ, ଅମ୍ଭ-ମାନଙ୍କର ବିବାହକାଳୀନ ମୂଲ୍ୟଦାବି ହେତୁ ସମାଜର ଶତ ଶତ ଲୋକେ ସର୍ବସ୍ୱାନ୍ତ ହୋଇ ଦରିଦ୍ରାବସ୍ଥା ପ୍ରାପ୍ତ ହେଉଅଛନ୍ତି । କନ୍ୟାପିତାଙ୍କର କନ୍ୟାବିବାହଟାର ଖରଚ ନିର୍ବାହ କରିବାକୁ କି ସଙ୍ଗତି ନ ଥିଲା ? ତାହା ନୁହେଁ, କେବଳ ବର ମୂଲ୍ୟଟା ତାଙ୍କ ପକ୍ଷରେ ଅତ୍ୟଧିକ ହୋଇପଡ଼ିଲା । ସମତାଗତ ମୂଲ୍ୟ ନ ଦେଲେ ଉପଯୁକ୍ତ ବର ମିଳିଲେ ନାହିଁ । କନ୍ୟା ସୁନ୍ଦରୀ, ଗୁଣବତୀ ଓ କୁଳବତୀ ହେଲେ କି ହେବ, ଯେବେ କନ୍ୟାପିତାଙ୍କର ମୂଲ୍ୟପ୍ରଦାନର ଶକ୍ତି ନାହିଁ, ତେବେ କେହି ଶିକ୍ଷିତ ଯୁବକ ବିବାହ କରିବାକୁ ସମ୍ମତ ହେଲେ ନାହିଁ । ଧିକ୍ ଅମ୍ଭ-ମାନଙ୍କ ଉଚ୍ଚଶିକ୍ଷାକୁ ! ଅମ୍ଭେମାନେ ଉଚ୍ଚଶିକ୍ଷା ବଳରେ କାହିଁ ସମାଜର ଉନ୍ନତି ସାଧନ କରିବୁଁ, ନା ସମାଜର କଳଙ୍କ ହୋଇ ଉଠିଲୁଁ ! ଅତଏବ ଏ କୁରୀତି ଯେପରି ରହିତ ହେବ, ତତ୍ପ୍ରତି ସମସ୍ତଙ୍କର ଯତ୍ନବାନ୍ ହେବା ଉଚିତ ।

୨ୟ ସଭ୍ୟ—ମୋହର ପୂର୍ବବକ୍ତା ବର୍ତ୍ତମାନ ଶିକ୍ଷିତ ସମାଜର ବିବାହ ରୀତିର ବିଷମୟ ପରିଣାମ ସମ୍ବନ୍ଧରେ ଉତ୍ତମ-ରୂପେ ବୁଝାଇ ଦେଇଅଛନ୍ତି । ମୁଁ ସେ ସମ୍ବନ୍ଧରେ କେବଳ ଦଓଟି ଗୋଟିଏ କଥା କହିବି । ଅଳ୍ପ କାଳ ପୂର୍ବେ ଏ ପ୍ରଦେଶରେ "ବରମୂଲ୍ୟ" କଥାଟା ଆଦୌ ଶୁଣା ନ ଥିଲା । କନ୍ୟାପିତା ନିଜ ଇଚ୍ଛାନୁସାରେ ସ୍ନେହର ସହିତ ବର କନ୍ୟାଙ୍କୁ ଆପଣାର ଶକ୍ତି ଅନୁସାରେ କେତେକ ଅଳଙ୍କାର ଓ ଅନ୍ୟାନ୍ୟ ବ୍ୟବହାରୋ-ପଯୋଗୀ ବାସନକୁସନ ଲୁଗାପଟା ଦେଇ ବର କନ୍ୟାଙ୍କୁ ବିଦାୟ କରୁଥିଲେ । କରଣସମାଜରେ ସାମନ୍ତମର୍ଯ୍ୟାଦା-ନାମକ ଏକ ଅଡ଼ମ୍ବରଯୁକ୍ତ ପ୍ରଥା ପ୍ରଚଳିତ ହେଲା । ବ୍ରାହ୍ମଣମାନଙ୍କ ମଧ୍ୟରେ ଅଧିକାଂଶ ସ୍ଥଳରେ ବରଂ କନ୍ୟାମୂଲ୍ୟ ଦେବାକୁ ପଡ଼ୁଥିଲା । ଏହା ଛଡ଼ା ଅନ୍ୟ କୌଣସି ଜାତିରେ ବିବାହ ସମ୍ପର୍କରେ ଦେବା ନେବାର ନାମ ପର୍ଯ୍ୟନ୍ତ ଶୁଣାଯାଉ ନ ଥିଲା । କରଣସମାଜରେ ସାମନ୍ତମର୍ଯ୍ୟାଦା ପ୍ରଥା ପ୍ରଚଳିତ ହେବା କାଳରୁ କନ୍ୟା ପିତାମାନଙ୍କର ଯେତର ଉତ୍ପତ୍ତି ହେଲା । ତହିଁରେ ମଧ୍ୟ ଅନେକ ପୁରାତନ ଗୃହ ନଷ୍ଟ ହୋଇଥିବାର ପ୍ରମାଣ ମିଳେ । ସାମନ୍ତମର୍ଯ୍ୟାଦା ଅନୁସାରେ କେବଳ ଅଳଙ୍କାର ଓ ଅନ୍ୟାନ୍ୟ ଦାନସାମଗ୍ରୀର ପରିମାଣ ବୃଦ୍ଧି ହୋଇଥିଲା । ମାତ୍ର ନଗଦ ଟଙ୍କାରେ ବରଶୁଳ୍କ ବିଧିଟା ଆଧୁନିକ ଶିକ୍ଷିତ ଯୁବକମାନେ ଅତି ଅଳ୍ପ ଦିନ ମଧ୍ୟରେ ଉଚ୍ଚ-ଶିକ୍ଷାର ଉନ୍ନତିଦ୍ୱାରା ବୈଜ୍ଞାନିକ ଶକ୍ତିବଳରେ ବାଙ୍ଗ-

ସ୍ୱଦେଶରୁ ଅନ୍ନଦାନ କରୁଅଛନ୍ତି । ଏହି କେତେକ ବର୍ଷ ମଧ୍ୟରେ ଏହାର ବିଷମୟ ପରିଣାମ ଏ ଅଞ୍ଚଳରେ ଉତ୍ତମରୂପେ ଅନୁଭୂତ ହୋଇଅଛି । ଅଉ ଆବଶ୍ୟକ ନାହିଁ । ଭାଇମାନେ ! ଆମ୍ଭେମାନେ ଏଥିର ମୂଳ, ଆମ୍ଭମାନଙ୍କଦ୍ୱାରା ଏଥିର ଉତ୍ପତ୍ତି ଏବଂ ଆମ୍ଭେମାନେ ଦୃଢ଼ସଙ୍କଳ୍ପ ହେଲେ ଅବଶ୍ୟ ଏହାର ବିନାଶ ସାଧନ କରି ପାରିବା ।

ଅନ୍ୟ ସଭ୍ୟ—ମୋହ ମନରେ ଗୋଟିଏ ଭାରି ସନ୍ଦେହ ଜାତ ହେଲା, ମୁଁ ପ୍ରଶ୍ନ ନ କରି ରହି ପାରିଲି ନାହିଁ । ସମାଜରେ ପୁରୁଷଜାତିକୁ ଉଚ୍ଚ ଏବଂ ସ୍ତ୍ରୀଜାତିକୁ ବା ନୀଚ ବୋଲି ଜ୍ଞାନ କରାଯାଏ କାହିଁକି ? ବିଶେଷତଃ ବିବାହ ସମ୍ପର୍କରେ ଏ ଦୁହିଙ୍କ ମଧ୍ୟରେ ପାର୍ଥକ୍ୟ ବିବେଚନା କରାଯିବାର କିଛିମାତ୍ର କାରଣ ନାହିଁ । ଯୁବକମାନଙ୍କର ବିବାହ ପୂର୍ବେ ମୂଲ୍ୟ ଦାବି କରିବାର କି ଅଧିକାର ଅଛି ? ଆଜି ଯେବେ ସମସ୍ତ ସ୍ତ୍ରୀଜାତି ଏକତ୍ରିତ ହୋଇ ପ୍ରତିଜ୍ଞା କରନ୍ତି ଯେ, ଯେଉଁମାନେ ଆମ୍ଭମାନଙ୍କୁ ଅବଜ୍ଞା କରନ୍ତି ବା ଯେଉଁମାନେ ଆମ୍ଭମାନଙ୍କୁ ଆପଣା ଅପେକ୍ଷା ନିକୃଷ୍ଟ ବିବେଚନା କରନ୍ତି, ସେମାନଙ୍କ ସହିତ ଆମ୍ଭମାନଙ୍କର ସମସ୍ତ ସମ୍ପର୍କ ରହିତ କରିବା । ଯେଉଁ ଯୁବକମାନେ ବିବାହ କାଳରେ ମୂଲ୍ୟ ଦାବି କରନ୍ତି, ସେମାନଙ୍କୁ କେହି ବିବାହ କରିବା ନାହିଁ । ହେ ଉଚ୍ଚଶିକ୍ଷାପ୍ରାପ୍ତ ଯୁବକବୃନ୍ଦ ! ମୁଁ ପଚାରେଁ, ତାହାହେଲେ ତୁମ୍ଭମାନଙ୍କର କି ଗତି ହେବ ? ତୁମ୍ଭେମାନେ ସାଏନ୍ସ, ଫିଲଜଫି,

ବିଜ୍ଞାନ, ଏଷ୍ଟ୍ରନମି ବା ଅନ୍ୟ କୌଣସି ଉଚ୍ଚଶାସ୍ତ୍ର ସାହାଯ୍ୟରେ ସ୍ତ୍ରୀଜାତିର ଅବଶ୍ୟକତା ସଂସାରରୁ ଦୂର କରି ଦେଇ ପାରିବ କି ? ପରସ୍ପର ମଧ୍ୟରେ ବିବାହ ସମ୍ପର୍କ ସ୍ଥାପନ କରି ସଂସାରଟା ଚଳାଇ ନେଇ ପାରିବ କି ? ତାହା ଯେବେ ନ ପାର, ତେବେ ବିବାହ ସମ୍ପର୍କରେ ସ୍ତ୍ରୀଜାତିଠାରୁ ଶ୍ରେଷ୍ଠତର ଆସନ ଦାବି କରିବାର ତୁମ୍ଭମାନଙ୍କର କି ଅଧିକାର ଅଛି ? ତୁମ୍ଭ-ମାନଙ୍କର ବିଡ଼ମ୍ବନାରେ ଯେବେ ସେମାନେ ଅରେମାଢ଼ ସ୍ଥିରସଙ୍କଳ୍ପ ହୁଅନ୍ତି, ତେବେ ତୁମ୍ଭମାନଙ୍କର ଦୁର୍ଗତିର ଶେଷ ରହିବ ନାହିଁ । ସେହିମାନଙ୍କର କୃପାଭିକ୍ଷା କରିବାକୁ ବାଧ୍ୟ ହେବ । ଆଉ ଯେବେ ତୁମ୍ଭେମାନେ ଶିକ୍ଷିତ ଯୁବକ ବୋଲି ବୃଥା ଅଭିମାନ କର, ତେବେ ଗୋଟିକ ଗୋଟି ଶିକ୍ଷିତ ଯୁବକ ଗୋଟିକ ଗୋଟି ବାୟୁଅ-ବଳଦ ହୋଇ ବୁଲିବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

୪ର୍ଥ ସଭ୍ୟ—ବିବାହ ସମ୍ପର୍କରେ କେବଳ ବରମୂଲ୍ୟ ନାହିଁ, ଆହୁରି ଅନେକଗୁଡ଼ିଏ ଅପବ୍ୟୟ ଅଛି, ସେ ସମସ୍ତ ଦୂର କରିବା କାରଣ ଚେଷ୍ଟା କରିବା ନିମନ୍ତେ ଆମ୍ଭ-ମାନଙ୍କର ସ୍ଥିରସଙ୍କଳ୍ପ ହେବା ଉଚିତ । ମୋହ ବିବେଚନାରେ ଯେତେବେଳେ ଯେଉଁ ସ୍ଥାନରେ ଏହି-ପରି ବିବାହର ସମ୍ବାଦ ମିଳିବ, ତେତେବେଳେ ସେହି ସ୍ଥାନରେ ସମସ୍ତ ସଭ୍ୟମାନେ ସ୍ୱତଃ ଉପସ୍ଥିତ ହୋଇ

ଉପରୋକ୍ତ ଉଦ୍ଦେଶ୍ୟ ସାଧନ ନିମନ୍ତେ ଯଥେଷ୍ଟ ଯତ୍ନବାନ୍ ହେବା ।

୨ୟ ସଭ୍ୟ—ଏ ଅତି ଉତ୍ତମ କଥା, ଏ ପ୍ରସ୍ତାବ ମୁଁ ଅନୁମୋଦନ କରୁଅଛି ।

ସମସ୍ତେ—ଏଥିରେ ସମସ୍ତେ ଏକମତ ।

ସଭାପତି—ତେବେ ଏ ପ୍ରସ୍ତାବ ସର୍ବସମ୍ମତିକ୍ରମେ ଗୃହୀତ ହେଲା, ଏବେ ସଭା ଭଙ୍ଗ ହେଉ ।

( ସମସ୍ତଙ୍କର ପ୍ରସ୍ଥାନ )



ତୃତୀୟ ଦୃଶ୍ୟ ।

ଚଉଧୁରୀଙ୍କ ଗୃହ ।

( ଚଉଧୁରୀ ଓ କପିଳ ଦରଜୁ ସଙ୍ଗରେ ପ୍ରବେଶ । କପିଳଙ୍କର ଅଭିବାଦନ । )

ଚଉ—ଗୁମାସ୍ତା ! କି ସମନ ହେ ? ଅଦାଲତ ପିଆଦା କି ସମନ ଆଣିଥିଲା ? ରାମ ସାହୁ ଦେଣଦାର କଣ ଅସଲ ଆପତ୍ତି ଦାଖଲ କଲାଣି କି ? ତାହା ପାଖରେ ଆମ୍ଭ ହାତର ଦୁଇ ଖଣ୍ଡ ଖତିଦ ରହିଗଲା ।

କପିଳ—ଆଜ୍ଞା ନା, ଏହି ସରୁଆନା, ଏ ତ ଜଜ ସାହେବଙ୍କ ଅଦାଲତର ଗୋଟାଏ ନୋଟିସ୍ ।

ଚଉ—କି ନୋଟିସ୍ ? ବୁଝିଲ କିଛି ?

କପିଳ—ଆଜ୍ଞା ହଁ, ବୁଝିଲିଣି, ନିରଞ୍ଜନ ବାବୁଙ୍କ ଉଇଲ ରଦ କରିବା କାରଣ ଶ୍ରୀରାମ ବାବୁ ଦରଖାସ୍ତ କରିଅଛନ୍ତି ।

ଚନ୍ଦ୍ର—( ସଚକିତେ ) କଣ କହୁଛ ! ଉଇଲ ରଦ କରିବାକୁ ଦରଖାସ୍ତ ! ଗୁମାସ୍ତା ! କଣ କରାଯିବ ? ତୁମେ ତ ଉଇଲର ନକଲିନ୍ଦା, ସେ କଣ ଉଇଲ ଜାଲ ବୋଲି ଆପତ୍ତି କରିଅଛନ୍ତି ?

କପି—ଉଇଲ ଜାଲ ବୋଲି ଆପତ୍ତି କରିଅଛନ୍ତି ଏବଂ ଲେଖି-ଅଛନ୍ତି ଯେ, ଇଷ୍ଟେଟର ଟଙ୍କା କଉଡ଼ି ଆପଣ ଅନେକ ତୋଷରପ କରୁଅଛନ୍ତି ।

ଚନ୍ଦ୍ର—କପିଳ ! କପିଳ ! ତୁମେ କହ ମୋତେ, କି ବୁଦ୍ଧି କରିବା ! ଯେବେ ଉଇଲ ଜାଲ ବୋଲି ପ୍ରମାଣ ହୁଏ, ତେବେ ଆମ୍ଭମାନଙ୍କର ଦଶା କଣ ହେବ ? କପିଳ ! ମୋତେ ଆଗେ କହ, କଣ କରିବା କହ ।

କପି—ଆପଣ ବ୍ୟସ୍ତ ହେବାର ପ୍ରୟୋଜନ ନାହିଁ, ଓକିଲ ମୁକ୍ତାରଙ୍କ ପରାମର୍ଶ ନେଇ ମକଦ୍ଦମାରେ ଜବାବ ଦେବା, ସେଥି ସକାଶେ ଭାବିଲେ ଆଉ କଣ ହେବ ?

ଚନ୍ଦ୍ର—ଯେବେ ଉଇଲ ଜାଲ ବୋଲି ପ୍ରମାଣ ହୋଇଯାଏ, ତେବେ ଆମ୍ଭର ତୁମ୍ଭର ଏବଂ ଉଇଲର ସାକ୍ଷିମାନଙ୍କର କି ଦଶା ହେବ କପିଳ ? ଆମ୍ଭର ଏତେ ଯତ୍ନ ଅକାରଣ ହୋଇଯିବ ! ହେ ଭଗବାନ୍ ! ମୁଁ ଏ ଦୁର୍ବୁଦ୍ଧି କାହିଁକି କଲି, ଜାମାତାର ହିସାବରେ ଯାହା ବାକି ହୋଇ-ଥାନ୍ତା, ତାକୁ କହିଥିଲେ ସେ ଛାଡ଼ି ଦେଇଥାନ୍ତା ।

ବର୍ତ୍ତମାନ ଅମ୍ଭମାନଙ୍କର କି ଗତି ହେବ କପିଳ ?
କପିଳ ! କପିଳ ଏବେ କି ବୁଦ୍ଧି କରିବା କପିଳ !

( ସପକ୍ଷ ଦାସ ହରଣିର ପ୍ରବେଶ )

ସପ—ଚଉଧୁରି ଆଜ୍ଞା, ଅବଧାନ । (ଅଭିବାଦନ)

ଚଉ—ତୁମେ କିଏ ? କୁଆଡ଼େ ଆସିଛ ?

ସପ—ଆଜ୍ଞା, ଆମେ ଅଦାଲତରେ ମୋହରିର କାର୍ଯ୍ୟ କରୁଁ, ମାମଲା ମକଦ୍ଦମାର ତଦ୍‌ବିର କରୁଁ ।

ଚଉ—କାହାର ମୋହରିର ?

ସପ—ଆଜ୍ଞା ନା, ଆମେ ଆମର ନିଜର ମୋହରିର, ଆମର ନିଜର ସିରସ୍ତା ଅଛି, ଆମେ ଆଉ କାହାର ମୋହରିର ନୋହୁଁ ।

ଚଉ—ତୁମେ କଣ ମିସଲରେ ଯାଇ ସୁଆଲ ଜବାବ କର ?

ସପ—ଆଜ୍ଞା ନା, ଆମକୁ ସେ ସବୁ କରିବାର ଦରକାର ପଡ଼େ ନାହିଁ, ଆମ ସିରସ୍ତାରେ ତ ଗଣ୍ଡା ଗଣ୍ଡା ଓକିଲ ବନ୍ଧା ଅଛନ୍ତି, ଆମେ ସୁଆଲ ଜବାବ କରିବାକୁ ଯିବୁଁ କାହିଁକି ? ଆପଣଙ୍କ ନାମରେ ଗୋଟିଏ ନୋଟିସ ବାହାରିଅଛି, ଆପଣଙ୍କ ନାମ ଶୁଣି ମୁଁ ଅମଲାଙ୍କୁ ହାତରୁ ପାଉଣାପଣ ଦେଇ ବୁଝି ଆସିଥିଲି । କାଳେ ଆପଣ ଜାଣିଥିବେ କି ନାହିଁ, ଏତଲା ଦବାକୁ ଆସିଲି, ଶ୍ରୀରାମ ବାବୁ ଆପଣଙ୍କ ନାମରେ ଗୋଟାଏ ମକଦ୍ଦମା ଦାଏର କରିଛନ୍ତି ।

ଚଉ—ହିଁ, ଆମେ ନୋଟିସ ପାଇଛୁଣି, ସେ ମକଦ୍ଦମା କଣ ହବ?

ସପ—ହବ କଣ ଗୋଟାଏ ? ତଦ୍‌ବର କଲେ କୁଅଡ଼େ ଉଡ଼ିଯିବ ?

ତଉ—ଉଡ଼ ଯିବ? ଏଁ ! ଉଡ଼ ଯିବ? ଏଁ ! ସତ କହୁଚ ?

ସପ—ମୁଁ ବୁଝିଚ, ଓକିଲମାନଙ୍କ ସହିତ କଥାବାର୍ତ୍ତା ହୋଇଥିଲି, ଶାମ ଦାସ ବାବୁ ଓ ରାମକୁମାର ବାବୁଙ୍କ ସହିତ ଏହି ପରାମର୍ଶ ପଡ଼ିଥିଲା ।

ତଉ—ସେମାନେ କହିଲେ, ଉଡ଼ିଯିବ ? ସେମାନେ ଭଲ ଓକିଲ ?

ସପ—ଆଜିକାଲି ଓକିଲ ମଧ୍ୟରେ ଏ ଦୁଇଜଣ ଭାରି ଟାଣ, ଏମାନଙ୍କ ସମାନ କାମ କରିବାକୁ ଆଉ କେହି ନାହାନ୍ତି । ମାମଲା ଗୋଟାଏ ପାଇଲେ ଏମାନେ ବାନ୍ଧି ଲଗେଇ ଟେକେଇ ଯିବେ । ଗୁମାସ୍ତା କଣ ଜାଣି ନ ଥିବେ କି ? ଗୁମାସ୍ତାଏ ! ଆପଣଙ୍କୁ କୋଉଁ କଥା ଛପା ଅଛି ? ମୋ ସାଙ୍ଗରେ ଅସନ୍ତୁ, ମୁଁ ସବୁ ସକଲ କରି ଦେବି, ଆପଣଙ୍କ ମକଦମା ଡିକ୍ରୀ ହେଲେ ତ ଗଲା ।

ତଉ—ଏଁ ! ଆମର ଡିକ୍ରୀ ହେବ ? ତାଙ୍କ ଆପତ୍ତି ଉଡ଼ିଯିବ ? ସତ କହୁଚ ? ଏମାନେ ଭଲ ଓକିଲ ? ଆମ ମାମଲା ଡ଼ିକ୍ରୀ କରି ଦେବେ ?

ସପ—ଆଜ୍ଞା, ତାଙ୍କ ସମାନ ଏ ଓକିଲଖାନାରେ ଆଉ ଓକିଲ ନାହାନ୍ତି । ସେମାନେ ଦଣ୍ଡକେ କଳାକୁ ଧଳା କରି ଦେବେ, ଧଳାକୁ କଳା କରି ଦେବେ, ଟହୁଁ ଟହୁଁ ତୁମରି ଗଳା ତୁମରି ହାତରେ କାଟି ଥୋଇ ଦେବେ,

ବୁଝି ପାରିବ ନାହିଁ । ବଖତ୍ ପଡ଼ିଲେ ହାକିମଙ୍କ ଗୋଡ଼ ଧରି ମିସିଲରେ ଲମ୍ବ ହୋଇ ପଡ଼ି ଯିବେ । ସେମାନଙ୍କର ଆଇନ କାନୁନ୍ ଶୋଜା ନାହିଁ । ସଞ୍ଜ ସକାଳ ହାକିମ-ମାନଙ୍କ ବସା ବସା ବୁଲି ସଲାମ ବଜାଇ ଆସନ୍ତି । ମିସିଲରେ ଦେଖିବେ, ହାକିମମାନେ ସେମାନଙ୍କୁ ଦେଖିବାମାତ୍ରେ ଖୁସି ହୋଇଯାନ୍ତି । ହାକିମମାନଙ୍କ ସହିତ ସେମାନଙ୍କର ଏପରି ଘଣି ମେଳ ହୋଇ ଗଲାଣି ଯେ ହାକିମଙ୍କୁ ହସ ମାଡ଼ିଲେ ସେମାନଙ୍କୁ ନିଶ୍ଚୟ ହସ ମାଡ଼ିବ, ହାକିମଙ୍କର ଦୁଃଖ ହେଲେ ସେମାନଙ୍କ ଅଖିରୁ ଅଗରୁସ ଲୁହ ଗଡ଼ି ପଡ଼ିବ । ଏପରି ସ୍ଥଳେ ସେମାନଙ୍କ ହାତରେ ମକଦମା ପଡ଼ିଲେ ଆଉ ଫେର ଡିକ୍ରୀର ଭାବନା ଅଛି ?

ଚନ୍ଦ୍ର—ଗୁମାସ୍ତା ! ତେବେ ଦେଖ, ତାଙ୍କ ସଙ୍ଗରେ ଯାଅ, ଯେବେ ଏପରି ଓକିଲଙ୍କ ହାତରେ ମକଦମା ଖରାପ୍ ହେବ, ତେବେ ଆମ୍ଭର କର୍ମ ନିତାନ୍ତ ମନ୍ଦ ବୋଲି ଜାଣିବା ।

ସପ—ଆଜ୍ଞା, ମୋଠାରୁ ଲେଖି ନିଅନ୍ତୁ, ମୁଁ ନିଶ୍ଚୟ ମକଦମା ଡିକ୍ରୀ କରାଇ ଦେବି ।

ଚନ୍ଦ୍ର—ଗୁମାସ୍ତା ! ମୁଁ ଆଉ ତୁମ୍ଭଙ୍କୁ ଅଧିକ କହିବି କଣ ? ତୁମ୍ଭେ ସବୁ ଜାଣ, ଯେପରି ସୁବିଧା ହୁଏ କର । ମୁଁ ଯାଉଛି ।

( ଚନ୍ଦ୍ରଧ୍ୱଜଙ୍କର ପ୍ରସ୍ଥାନ )

କପି—ତେବେ କଣ ଏଇ ହେଲା ? ରାମକୁମାର ବାବୁ ଓ ଶ୍ୟାମଦାସ ବାବୁଙ୍କୁ ଓକିଲ କରିବା ?

ସପ—ହଁ, ଆଉ ପଚାରୁଛ ? ଗୁମାସ୍ତା, ତୁମେ କଣ ବୁଝି ପାରୁନା ? ହାତର ପାଞ୍ଚ ସମସ୍ତଙ୍କର ଅଛି, ଏମାନଙ୍କ ପାଖରେ ଠଙ୍କାଠା ହିସାବ ଦଶ ଅଣା, ସମୟ ସମୟରେ ଆଠଣା ଛ ଅଣା ମଧ୍ୟ ଚଳେ । ଛ ଅଣା ଆଠଣା କି ଦଶଣା ପର୍ଯ୍ୟନ୍ତ ହାତରେ ରହିଗଲା, ସେଥିରୁ ତମର କିଛି ତ ମୋର କିଛି, ଦୁଇ ଥର ପାଞ୍ଚ ଥର ବିନା ଫିସରେ ମଧ୍ୟ କାର୍ଯ୍ୟ ଚଳିଯିବ, ତେତେବେଳେ ଖୋଲିଣାଯାକ ଆମର ।

କପି—ଏଁ ! କଣ କହୁଛ ! ଏପରି ଓକିଲ ? ଆରେ ସାବାସ୍ ଭାଇ, କଲିକତା ରାସବିହାରୀ ଘୋଷ କାହିଁକି ତାଙ୍କ ସରି ହେବ ? ଚାଲ ଚାଲ ଚାଲ, ତୁମେ ଆସି ବଡ଼ ଉପକାର କଲ, ନ ହେଲେ ତ ମୁଁ କଣା ହୋଇ ଧସାରେ ପଡି ଯାଇଥାନ୍ତି ।

( ଉଭୟଙ୍କର ପ୍ରସ୍ଥାନ )



ଚତୁର୍ଥ ଦୃଶ୍ୟ ।

ପୁଷ୍କରିଣୀ ଘାଟ ।

(କୁନ୍ତଳାର ମାତା ଏବଂ ଅନ୍ୟ କେତେକ ଜଣ ରମଣୀଙ୍କର ସ୍ନାନାର୍ଥ ଗମନ)

୧ମ ରମଣୀ—ଅଁଲୋ କୁନ୍ତଳା ବୋଉ ! କୁନ୍ତଳା ବାହାଘର କଥା କଣ ହେଲା ?

କୁନ୍ତଳା-ମାତା—କଣ କହିବ ଲୋ ଭଉଣି ! ହିନସ୍ତା କପାଳକୁ

ସବୁ ଦୁନସ୍ତା ଯୋଗ । ବାହାଘର ଅଉ ଏଇକ୍ଷିଣି କେମିତି କରୁଛ, ଗଲଣି ଫେର ଶୁଦ୍ଧମାସ ପାଡ଼ଲେ, ବୈଶାଖ ଜ୍ୟେଷ୍ଠକୁ ଯେବେ ବାହାଭଥି ଥିବ ତ ହବ ।

୧ମ ଭମ—ସ୍ତ୍ରୀ ତ କୋଉଁ କାଳ ଯୁଗେ ଶୁଣା ନ ଥିଲା । ଝିଅଟା ମନା କରୁଛ—ମୁଁ ବାହା ହେବ ନାହିଁ । ଅଁଲୋ ସେ କାହିଁକି ଏମିତି ମନା କରୁଛ ?

କୁନ୍ତ-ମାତା—ମୁଁ ଜାଣିଛ ! ଡର ତ ମାଡ଼ୁଛି—କହୁଛି କଗର କଲେ ଜୀବନ ହରେଇ ଦେବ ।

୨ୟ ଭମ—ଇଲୋ ଝିଅଙ୍କୁ ପାଠ ପଢ଼େଇବାର ଫଳ ଏତିକି ।

୩ୟ ଭମ—ଯାହା କହିଲ ଭଉଣି, ଝିଅଟାମାନେ ଫେର କୋଉଁ କାଳେ ପାଠ ପଢ଼ୁଥିଲେ ? ଇଲୋ ଝିଅ ସବୁ ପାଠ ପଢ଼ି କଣ ଚାକିରି କରବେ ? ନା କଉଡ଼ି କମେଇବେ ? ଦରବାରରେ ବସିବେ ? ହାକିମ ହେବେ? ଛୁଆଁକର, ଛୁଆଁକର !

୨ୟ ଭମ—ଅଲୋ ଦରବାରରେ ବସିବାକୁ କଣ କିଏ ମନା କରବ ? ଘୋଡ଼ା ଚଢ଼ିଲେ, ଗାଡ଼ି ଚଢ଼ିଲେ, ସଭାକୁ ଗଲେ, ଅଉ ଦରବାରକୁ କାହାକୁ କହନ୍ତ କି ?

୩ୟ ଭମ—ଫେର ସବୁ ଗୋଟାଏ ଗୋଟାଏ ଜାମା ପିନ୍ଧୁ ନାହାନ୍ତି ? କୋଟ୍ଟାମାନ୍ଙ୍କୁ ନାହାନ୍ତି ? ପାଇଜାମା ଗଣ୍ଡେ

ଖଣ୍ଡେ ପିନ୍ଧଲେ ତ ମାଇକିନିଆ କି ମରଦ ଚିହ୍ନି ହୁଅନ୍ତେ ନାହିଁ ।

୧ମ ରମ—ମୁଣ୍ଡବାଳତକ କାଟି ନାହାନ୍ତି; ମୁଣ୍ଡିମାନ ଲଣ୍ଡା କରି ଧାହାବ ଟୋପି ଗୋଟାଏ ଗୋଟାଏ ନଗେଇ ଦେଲେ ତ ବଜା ଡାହାବ, ସାହବା ତାଙ୍କୁ ଗୁଳିକରି ନ ଦେବ କାହିଁକି?

୨ୟ ରମ—କରନ୍ତୁ ଲୋ ଭଉଣି ; ଆମର ତ ଅପି ଦିନକାଳ ପଡ଼ିଲାଣି । ଯେ ଥିବ ସେ ଦେଖିବ, ମରଦଙ୍କ କାମ ମାଇପେ କରନ୍ତୁ, ମାଇପଙ୍କ କାମ ମରଦ କରନ୍ତୁ ।

୩ୟ ରମ—ଏ କାଳକୁ ମାଇପଙ୍କ ବାହା ତ ହେଲା ଜବର । ମରଦଙ୍କର କଣ ତେଜ ଅଛି ? ମାଇପେ ପିନା ମରଦଙ୍କ ହାତକୁ ଚାହିଁ ରହୁଥିଲେ, ଏବକାଳକୁ ତ ମରଦଙ୍କ ଚୁଟି ରହିଲା ମାଇପଙ୍କ ହାତମୁଠାରେ, ମାଇପେଯାକ ଯେମିତି ନଚେଇଲେ, ମରଦଯାକ ଭାନୁବତୀ କଣ୍ଢେଇ ପରି ସେମିତି ନାଚିଲେ ।

୪ର୍ଥ ରମ—ଆଉ ଦିନାକେତେ ଯାଉ—ଏ ମାଇପେ ଯାହା ହେଉଛନ୍ତି, ସେ ମରଦଙ୍କ ପେଟରେ ପିଲା ଝିଲା ନ ରଖେଇ ପହଜରେ ଛାଡ ଦେଲେଣି ପରା !

୧ମ ରମ—ବୁନ୍ଲୀ ବୋଉ ! ତୁ ସେ କଥାରୁ କଣ ପାଇବୁ ? କାହିଁ କି ବାହାଘର ବନ୍ଦ କରିବୁ, ଏତେଥିରୁ ଏତେ କଥା କରି ଏ ଝୁଅଟା କଥାରେ ବାହାଘର ବନ୍ଦ କରିବୁ ? ଯେ ଶୁଣିବ ଗୋଟାଏ ହସିବ ।

୨ୟ ରମ—ଅଉ କଣ ମ, ଏ ପଞ୍ଚୁନାହାକଙ୍କ ନା' ଗୃରଅଛେ ବାଜୁଛି, ଝୁଅଟା ଏବେ ତାଙ୍କ ନା' ପକଉଚ ।

୩ୟ ରମ—କୁନ୍ତଳୀ ବୋଉ ! ତୁ କେବେଁ ବାହାଘର ବନ୍ଦ କର ନା, ଏ ମାଙ୍କଡ଼ ଟୋକାଟା, ତାର କଥା ଶୁଣୁଛୁ ? କଣ କରବ କରୁ ।

କୁନ୍ତ-ମାତା—କେତେ ଲୋକ କେତେ କଥା କହୁଛନ୍ତି; ମୁଁ ଶୁଣି ଶୁଣି ମୋ ଛାତି ପଥର ହୋଇ ଗଲାଣି; ମୋ କପାଳରେ ବିଧାତା ଏତେ ଦୁଃଖ ରଖିଥିଲା ମୁଁ ଜାଣି ନ ଥିଲି । ମୋର ପିଲାଟିକୁ ବୋଲି ସେ ଜାଣ, ମୁଁ ଏବେ କୋଉଁ ବୁଦ୍ଧି କରିବ ? ତାର ସୁଖ ଲାଗି ସିନା ଏତେ କଥା; ବିଭା ହେବାକୁ ତାର ଯେବେ ମନ ନାହିଁ, ତେବେ ମୁଁ ଧରି ବାନ୍ଧି ବିଭା କରେଇବ କୋଉଁ ସୁଖକୁ ? ଯେ ଯାହା କହିବେ କହନ୍ତୁ, ସବୁ କଥା ସହି ହେବ; ମାତ୍ର କୁନ୍ତଳା ମୋର ଜୀବନସଙ୍ଗୀନୀ, ମୋର ଅଞ୍ଚଳନିଧି, ମୋର ଏକମାତ୍ର ଅନ୍ଧୁଣୀନୟନ--ସେ ଯେବେ ପ୍ରାଣ ହରାଇ ଦେବ, ତେବେ ମୁଁ କେଉଁ ଭରସାରେ ଦେହ ଧରିବ, କାହା ମୁହଁ ଦେଖି ଜୀବନ କାଟିବି । ମୋ କୁନ୍ତଳାର ଯେବେ ଇଚ୍ଛା ନାହିଁ, ମୁଁ ବାହାଘର କରିବ ନାହିଁ । ଗୁଡ଼ାଏ ମାସ ଗଡ଼ି ଗଲେ ମୋ ଝିଅ କଣ୍ଢ ବୁଢ଼ୀ ହୋଇ ଯାଉ ନାହିଁ । ମନ ଯେବେ ତାର ବଦଳି ଯିବ, ତେବେ ଦେଖି ଶୁଣି ଯାହା ହେବ କରିବ ।

( ସମସ୍ତଙ୍କର ପ୍ରସ୍ଥାନ )



# ତୃତୀୟ ଅଭିନୟ ।

## ପ୍ରଥମ ଦୃଶ୍ୟ ।

ଚଉଧୁରୀଙ୍କ କଚେରୀଘର ।

( ଜଣେ ଗୁମାସ୍ତା ବସି ହିସାବପତ୍ର ଲେଖିବାରେ ପ୍ରବୃତ୍ତ ।
ଚାରି ଜଣ ଖାତକଙ୍କର ପ୍ରବେଶ । )

୧ମ ଖାତକ—ଗୁମାସ୍ତା, ଚଉଧୁରୀ କାହାନ୍ତି ?

ଗୁମାସ୍ତା—ମୁଁ କହି ପାରିବ ନାହିଁ ।

୨ୟ ଖାତ—ଘରେ ଅଛନ୍ତି ?

ଗୁମା—ମୁଁ କହି ପାରିବ ନାହିଁ ।

୩ୟ ଖାତ—କୁଆଡ଼େ ଯାଇଛନ୍ତି ?

ଗୁମା—ମୁଁ କହି ପାରିବ ନାହିଁ ।

୧ମ ଖାତ—ଆମ୍ଭେମାନେ ଯେ ସବୁ ଟଙ୍କା ଅସୁଲ ଦେଇ ଯାଉଁ, ସେ ସବୁ ହିସାବପତ୍ର କିଏ ଲେଖେ ?

ଗୁମା—ମୁଁ କହି ପାରିବ ନାହିଁ ।

୨ୟ ଖାତ—ତାର ହିସାବ ସବୁ ଲେଖା ଅଛିଟିକି ?

ଗୁମା—ମୁଁ କହି ପାରିବ ନାହିଁ ।

( ଜଣେ ତପସ୍ୱିନୀର ପ୍ରବେଶ )

ତପସ୍ୱିନୀ—ଚଉଧୁରୀ କାହାନ୍ତି ?

ଗୁମା—କାହିଁକି ?

ଚପ—ଚଉଧୁରୀ ଝନାରି ମେକେଷ୍ଟର ହେଲେ, ମୁଁ ପରୁଆନା ଅଣିଛୁ ।

ଗୁମା—ମୁଁ ତେବେ ଡାକିଦେବି ।

( ଗୁମାସ୍ତାର ପ୍ରସ୍ଥାନ । )

୧ମ ଖାତ—ଦେଖୁଛ ତ ? "ମୁଁ କଷ୍ଟ କହ ପାରିବ ନାହିଁ ।" ଗୋଟିକ ଗୋଟି ଏଠି ଢାଲମ୍ ।

( ଚଉଧୁରୀ ଓ ଗୁମାସ୍ତାଙ୍କର ପ୍ରବେଶ । )

ଚପ—(ପ୍ରଣାମ କରି) ଆଜ୍ଞା ପରୁଆନା ନେବା ହେଉନ୍ତୁ । ଅପଣ ଅନାରି ମେକେଷ୍ଟର ହେଲେ ।

( ପରୁଆନା ପ୍ରଦାନ, ଅଭିବାଦନ ଓ ପ୍ରସ୍ଥାନ । )

ଚଉ—ଗୁମାସ୍ତା ! ନଅ ରଖ, ଖୁବ୍ ସାବଧାନରେ ରଖିବ, ଏ ଜୀବନରେ ଆଜ ଗୋଟାଏ ଦନ ଜାଣିବ ।

୧ମ ଖାତ—ଆପଣଙ୍କର ଶୁଭସମ୍ବାଦ ମିଳଅଛି, ଆମ୍ଭେମାନେ ବଡ଼ ଖୁସି ହେଲୁଁ ।

୨ୟ ଖାତ—ଆପଣ ଧର୍ମ ଯୁଧିଷ୍ଠିର, ଆପଣଙ୍କର ଉନ୍ନତ ନ ହେବ ତ ଆଉ କାହାର ହେବ ?

ଗୁମା—ଯାହାହେଉ ଖାମିନ୍ଦଙ୍କର ଗୃହକର ଶ୍ରୀ ଏ ହେଲା । ଆମ୍ଭମାନଙ୍କର ମଧ୍ୟ କର୍ମ ଫେରିବ ଯେ ।

୩ୟ ଖାତ—ଆଜ ବଡ଼ ଶୁଭ ଦନ, ଆଜ ଆମ୍ଭମାନଙ୍କୁ ଖଲାସ କର ଦଆଯାଉ ।

୨ୟ ଖାତ—ଅମ୍ଭେମାନେ ଦଡ଼ଡ଼ ଦନ୍ଦିତ ଅଟଳୁଁଣି ।

ରଜ—ତୁମ୍ଭମାନଙ୍କର କଣ ଅଛି ହେ ? କାହିଁକି ଦଉଡଉଛ ? ଗୁମାସ୍ତା, ବୁଝିବଟି ।

୧ମ ଖାତ—ମୋର ସବୁ ଛନ୍ଦିହଗଲା କି ଆଉ କଛି ହବ, ହିସାବ କରି ଦେଲେ ମୁଁ ନକାଶ କରଦେବ ।

ରଜ—ବେଶ୍ ହିସାବ କର, ତମସୁକ ତାରଖରୁ ଅଳଯାଏ ଅସଲ ସୁଦ କେତେ ହେଲା ଦେଖ ।

୨ୟ ଖାତ—ମୋହର ତ ଅସଲ ସୁଦ ସବୁ ନକାଶ କର ଦେଇ ଗଲ, ତମସୁକ ଫେଣ୍ଡ ଦେଇ ନାହାନ୍ତି; ଅଜ୍ଞା ଅନେକଥର ଦଉଡ଼ିଲଣି, ଅଳ ମିଳଗଲେ ଛୁଟି ପାଇଯାନ୍ତି ।

ରଜ—ଅହେ ତମସୁକ ଖଣ୍ଡ ତମର କଣ କେହି ଖାଇଯାଉଛି ? ଟଙ୍କା ତ ଦେଇଗଲ, ଆଉ ତମସୁକର ବଳ କଣ ରହିଲା ? ତୁମେ ନେଇ ବା ତାକୁ କଣ କରବ, ଆଉ ଅମେ ରଖି ବା କଣ ହବ ? ଅମଠାରେ କଣ ତୁମର କଛି ଅବଶ୍ୱାସ ଅଛି ?

୨ୟ ଖାତ—ଅଜ୍ଞା ନାହିଁ, ଅପଣଙ୍କଠାରେ ଅବଶ୍ୱାସ ନାହିଁ, ତେବେ—

ରଜ—ତେବେ ଆଉ କଣ ? ନକାଶି ତମସୁକଟା ପଛାଣେ ଏତେ କଗର କାହିଁକି ? ତୁମେ ନତାନ୍ତ ବେକୁବ୍ । ତମସୁକ ଖଣ୍ଡ ଅମ ପାଖରେ ଅଛି, ସେ ତୁମର ମଙ୍ଗଳ; ଘର ବାଡ ବନ୍ଧକ ଦେଇଛ, ଧର ଆଉ କେହି ମହାଜନ କ୍ରୋକ କଲା । ଦସ୍ତାବଜ ଖଣ୍ଡ ଥିଲେ ଅମେ ସହଜରେ ଘର ବାଡ ଦଖଣ୍ଡ ରକ୍ଷା କର ଦେଇ ପାରବୁଁ ।

୨ୟ ଖାତ—ଅଜ୍ଞା ମୋର ଆଉ କେହି ମହାଜନ ନାହାନ୍ତି ।

ଚଉ—ଆବେ ତୁମେ ତ ନିତାନ୍ତ ଅବୁଝା ଲୋକ, ମହାଜନ ଅଜ କେହି ନାହିଁ, କାଲି ହବାକୁ କଣ କେହି ମନା କରିବ ? ତୁମରି ଭଲ ପକାଶେ କହୁଛୁଁ, ଆମର କଣ ଭଛୁ ସେଥିରେ ସ୍ୱାର୍ଥ ଅଛି ?

୨ୟ ଖାତ—ଅଜ୍ଞା ନାହିଁ, ମୋ ତମସୁକ ଖଣ୍ଡି ମତେ ଉଥପପ ଦିଅନ୍ତୁ ।

ଚଉ—ହଉ ହେଲା, ନବ, ତୁମେ ୪ ଦିନ ପରେ ନେଇଯିବ ।

୩ୟ ଖାତ—ଅଜ୍ଞା ମୋ ଖତସୂଚା ବୁଝିଥାନ୍ତେ ।

ଚଉ—ତୁମର କଣ ବୁଝିବା ? ତୁମେ ତ ଅଦାଲତରେ ଅସଲ ଆପତ୍ତି ଦାଖଲ କରିଛ । ତୁମର ଯାହା ବୁଝା ହେବ, ସେହି ଅଦାଲତରେ ହେବ ।

୩ୟ ଖାତ—ଆଜ୍ଞା ମୁଁ କଣ ଖୁସିରେ ଆପତ୍ତି ଦାଖଲ କଲି ? ଆପଣଙ୍କର ଡିକ୍ରୀ ଜାରି ହୋଇ କ୍ରୋକ ପରୁଆନା ବାହାରିବାରୁ ମୁଁ ବାଧ ହୋଇ ଦରଖାସ୍ତ ଖଣ୍ଡେ ପକାଇ ଦେଇଛି ।

ଚଉ—ତେବେ ସେହି ଅଦାଲତରେ ଦେଖାଯିବ ।

୩ୟ ଖାତ—ଆଜ୍ଞା ଆପଣଙ୍କ ଡିକ୍ରୀ ଅନୁସାରେ ହିସାବ କଲେ ମୁଁ ୪୦।୫୦ ଟଙ୍କା ଅଧିକା ଦେଇ ସାରିଲିଣି ।

ଚଉ—ଅଧିକଟା କଣ ଦେଲ ହେ ? ଡିକ୍ରୀ ସାଙ୍ଗରେ କଣ ଅଛି ? ଡିକ୍ରୀରେ ତ ସୁଦ ଟ ୦ ୧ ଲେଖାଏ, ଆମର ନଷ୍ଟି ସୁଦଟା ବୁଅଢ଼େ ଯିବ ?

୩ୟ ଖାତ—ଆଜ୍ଞା, ଡ଼କ୍ଟିକାଣରେ ଏକ ପଇସା ଅସୁଲ ଦଅ ଯାଇ ନାହିଁ ।

ଚଉ—ଅସୁଲ ଦଅ ନ ଗଲ ସେଥିରେ ତୁମର କଣ ଅଛି ?

୩ୟ ଖାତ—ଆଜ୍ଞା, ମୋ ଘର ଦ୍ୱାର ନୋକ ହୋଇଯାନ୍ତା ।

ଚଉ—ଓଃ ! ନୋକ ହୋଇଗଲେ ମଧ୍ୟ ତୁମର କଣ କ୍ଷତି ହୁଅନ୍ତା ?

୩ୟ ଖାତ—ନଲମ ହୋଇ ଯାଇଥାନ୍ତା ।

ଚଉ—ଓଃ ! ଧର ହେଲ, ଯେଥିରେ ତୁମର କ ଲୋକସାନଟା ହୁଅନ୍ତା ? ତୁମେ ଅସୁଲ ଆପତ୍ତି ଦାଖଲ କର ଦେଲ, ପ୍ରଥମେ ସତ୍ୟଜ୍ଞାନ କଲ, ଅମେ କ ସକାଶେ ତୁମ ସହିତ ସତ୍ୟ ରକ୍ଷା କରବୁଁ ?

୩ୟ ଖାତ—ଆଜ୍ଞା, ଅପଣଙ୍କର ଏହି ବିଚାର ହେଲ ?

୧ମ ଖାତ—ଗୁମାସ୍ତା କେବଳ ଅସଲ ସୁଦ ଅଦ୍ୟରୁ ହିସାବ କରଛନ୍ତି, ଅସୁଲଯାକ ଆଦୌ କାଟିବାକୁ ନାହାନ୍ତି ।

ଗୁମାସ୍ତା—ତାଙ୍କ ଉପରେ ଅସଲ ସୁଦ ଅକଯାଏ ହେଲା ଟ ୯୨୨୩।୯ ।

ଚଉ—ଦଅ, ଟଙ୍କା ଅଣ, ମତେ ଅଉ ସମୟ ନାହିଁ, ମୁଁ ଯିବ ।

୧ମ ଖାତ—ମୋ ଅସୁଲ ଟଙ୍କା କୁଆଡ଼େ ଗଲ ?

ଚଉ—ଅସୁଲ ଅଉ କଣ ହେ ? ତମସୁକରେ ମିଆଦ ଥିଲା ଦୁଇ ମାସ, ସେ ଦୁଇ ମାସ ମଧ୍ୟରେ କଛି ଅସୁଲ ଦେଇଥିଲ ?

୧ମ ଖାତ—ଦୁଇ ମାସ ମଧ୍ୟରେ ଦେଇ ନାହିଁ, କିନ୍ତୁ ତମସୁକ ତାରିଖରୁ ୯ମ ମାସ ପରଠାରୁ ପ୍ରତି ମାସରେ ଶଏ ପଚିଶ, ଶଏ ପଚିଶ କରି ଅସୁଲ ଦେଇଛି ।

ଚନ୍ଦ୍ର—ତେବେ ଠିକ୍ ଦୁଇ ମାସ ପରେ ନାଲିସ ନ କରି ଆମେ ଏତେ ଦିନ ଅପେକ୍ଷା କଲୁଁ କାହିଁକି ? ଯାହା ଦେଇ-ଥିବ, ତାହା କେବଳ ନାଲିସ ବନ୍ଦ କରାଇବା କାରଣ ଦେଇଥିବ, ନାଲିସ ଏପର୍ଯ୍ୟନ୍ତ ବନ୍ଦ କରା ଯାଇଅଛି, ତମସୁକ ବାବତ୍‌ରେ ଯାହା ପାଉଣା ହେଲା, ଦାଖଲ କର, ତମସୁକ ନେଇ ଯାଅ । ଆମର ସଫା କଥା, ଏଠି କିଛି ଗୋଳମାଳ ନାହିଁ ।

୧ମ ଖାତ—ହେ ଜଗଦୀଶ୍ୱର ! ମୁଁ ଟ ୫୦୦୯ କରଜ ନେଇ ଟ ୬୦୦ ଅସୁଲ ଦେଇ ପାରିଲିଣି । ବରାବର କହିଲି, ହିସାବ ହେବ, ହିସାବ ହେବ ! ଅକ କହିଲ, ସବୁ ଗଲା ! ହେ ଭଗବାନ୍ ! ମୋର କେହି ସାକ୍ଷୀ ନାହାନ୍ତି, ଏକା ତୁମେ ସାକ୍ଷୀ, ମୋ ମସ୍ତକରେ ବଜ୍ରପାତ କର ! ମୁଁ ସରିଗଲି, ସରିଗଲି, ଆଜି ଏ ସଂସାରରେ ରହି ପାରିବି ନାହିଁ ।

ଚନ୍ଦ୍ର—ଗଜୁସିଂହ !

( ଗଜୁ ସିଂହର ପ୍ରବେଶ । )

ଗଜୁ—ହଜୁର ! ( ଚନ୍ଦ୍ରଧୂଜଙ୍କର ନେତ୍ର ଇଙ୍ଗିତ ) ଚଲେ, ଗୋଲମାଲ ମତ୍ କିଜୀଯେ । (ଖାତକମାନଙ୍କୁ ବହିଷ୍କରଣ)

ସମସ୍ତ ଖାତକଗଣ } —ହେ ଭଗବାନ୍ ! ହେ ଜଗଦୀଶ୍ୱର ! ତୁମେ ସାକ୍ଷୀ, ତୁମେ ସାକ୍ଷୀ ।

( ସମସ୍ତଙ୍କର ପ୍ରସ୍ଥାନ )



## ଦ୍ୱିତୀୟ ଦୃଶ୍ୟ ।

### ଉପବନ ମଧ୍ୟସ୍ଥ ବୈଠକଖାନା ।

( ସଦାନନ୍ଦ ଓ ୩ ଜଣ ବନ୍ଧୁ ମଦ୍ୟପାନରେ ପ୍ରବୃତ୍ତ, ଖାନସମା ଓ ଭୃତ୍ୟଗଣ ଦଣ୍ଡାୟମାନ । )

୧ମ ବନ୍ଧୁ—(ପାତ୍ର ଦେଖାଇ) ଦିଅ ଦିଅ, ଆଣ ଆଣ ଆଣ ।

୨ୟ ବନ୍ଧୁ—(ପାତ୍ର ଦେଖାଇ) ଆଣ ଆଣ, ଦିଅ ଦିଅ ।

ସଦାନନ୍ଦ—(ଭୃତ୍ୟ ପ୍ରତି) ଦିଅ ଦିଅ, ଢାଳ ଢାଳ ।

( ଭୃତ୍ୟର ମଦ୍ୟ ପ୍ରଦାନ । )

୧ମ ବନ୍ଧୁ—ପିଅ ପିଅ ।

୩ୟ ବନ୍ଧୁ—ପିଅ ପିଅ ।

୨ୟ ବନ୍ଧୁ—ଖାନ୍‌ସମା ! ଚପ୍ ଲାଓ, କୋରମା ଲାଓ ।

ସଦା—ଲାଓ ଖାନ୍‌ସମା, ଜଲ୍ଦିର ଲାଓ ।

ଖାନ୍—ହଜୁର, ଲାତାହୁଁ ।

(ଖାନ୍‌ସମାର ପ୍ରସ୍ଥାନ ଏବଂ ଖାଦ୍ୟପାନ ସହ ପୁନଃ ପ୍ରବେଶ । ସଦାନନ୍ଦ ଏବଂ ବନ୍ଧୁମାନଙ୍କର ଭୋଜନ । )

୧ମ ବନ୍ଧୁ—ବାବା ତୁମର ଅନାଣ୍ଡ ହେଲେ ।

୨ୟ ବନ୍ଧୁ—ବାବା ଅନାଡ ମାଜେଷ୍ଟ୍ରର ହେଲେ ।

୧ମ ବନ୍ଧୁ—ବବା ଅନାଡ଼ ଜଜ ହେବେ । ଚାଲେ, ଚାଲେ, ଚାଲେ । (ଛଉଭୟର ମଦ୍ୟ ପ୍ରଦାନ)

୨ୟ ବନ୍ଧୁ—ବାବା ଅନ.ଡ କମିଶନର ହେବେ ।

୩ୟ ବନ୍ଧୁ—ଦେର ଅଣିବେ, ସେମ୍ପିଅନ ଅଣିବେ ।

ସମସ୍ତେ—ହେଓ ହେଓ ହେଓ ହେଓ !

( ୩ୟ ବନ୍ଧୁର ପ୍ରସ୍ଥାନ )

୧ମ ବନ୍ଧୁ—ବାବା ତୁମର ଅନାଡ଼ ଖାନ୍‌ସମା ହେଉନ୍ତୁ, କୋରମା ଗୋଇବେ, କାର ଖୋଇବେ ।

୨ୟ ବନ୍ଧୁ—ସଦାନନ୍ଦ ବାବୁ ! ତୁମେ—ତୁମେ—ଅପ୍—ଅପ୍ ହନ୍‌ରେବ ରଜା ହୋଯାଓ—ହୋଯାଓ—ହୋଯାଓ —ଅବ ହୋଯାଓ—ଅବ ହୋଯାଓ—ହାମ୍—ହାମ୍ —ମେ—ଅମେ ମନ୍ତ୍ରୀ—

୧ମ ବନ୍ଧୁ—ଗ୍ରେପ୍ ଗ୍ରେପ୍ ! ଅମେ—ଅମେ—ହାମ୍—ହାମ୍ ମନ୍ତ୍ରୀ ।

୨ୟ ବନ୍ଧୁ—ନାହିଁ—ନାହିଁ—କଭି ନାହିଁ—କଭି ନାହିଁ— ହୋଗା ନାହିଁ—ହାମ୍ ହୋଗା—ହାମ୍ ମନ୍ତ୍ରୀ ହୋଗା । ମଦ୍‌କା ଭଣ୍ଡାର କବ୍ଜା ଲେଗା, ହାମ୍ ହାମ୍, ବନ୍ଦା ବନ୍ଦା ଲେଗା ।

୧ମ ବନ୍ଧୁ—ନେହିଁ ନେହିଁ, ହାମ୍ ଲେଗା । (ଉଭୟଙ୍କର ବିବାଦ)

୨ୟ ବନ୍ଧୁ—

ଗୀତ ।

ମହୀମଣ୍ଡଳେ ସାର ସାମଗ୍ରୀ
ମଦବାରୁଣି ଏକ ରେ ।

ଦେବତାଯୋଗ୍ୟ ନୃପତିଭୋଗ୍ୟ
ସବୁଠାରେ ଠେକ ରେ ।

ସୁରା ସେବନ ବିନା ଜୀବନ
ନର ନୋହେ ଭେକ ରେ ।

ସୁଖ ପ୍ରସାଦ ନାହିଁ ବିଷାଦ
ଯାଉ ପଛେ ବେକ ରେ ।

( ୩ୟ ବନ୍ଧୁ, ଜଣେ ନର୍ତ୍ତକୀ ଏବ ତାହାର ସମାଜମାନଙ୍କର ପ୍ରବେଶ । )

ସମସ୍ତେ—ବାହୁଆ, ବାହୁଆ, ବାହୁଆ !

ସଦା—ବାଈଜି ସଲାମ୍, ବାଈଜ ସଲାମ୍ ।

ବନ୍ଧୁଗଣ—ସଲାମ୍, ସଲାମ୍, ବନ୍ଦେଗି, ବନ୍ଦେଗି, ଅଲେକମ୍ ବାଈଜ, ଅଲେକମ୍ ବାଈଜ !

( ସମସ୍ତଙ୍କର ପୁନଃ ପୁନଃ ସଲାମକରଣ । )

ସଦା—ବାଈଜ, ଗୋଟିଏ ସଙ୍ଗୀତ ହେଉ ।

ବନ୍ଧୁ—ଗାଓ ଗାଓ ବାଈଜ, ଗାଓ ବାଈଜ, ଗାଓ ବାଈଜ ।

ବାଈ—

ଗୀତ ।

ପ୍ରେମପସରୁ ଦେଇ ଶିରେ
(ମୁଁ ତ)କେତେ ବୁଲିଲିଣି ଏ ମହୀରେ ।
ଏ ଯମ ନାଗର ଗୁଣର ସାଗର

ଧୋଡା ଗଡ଼ିଛି ଗୋଟିକ ମାଡର,
ଖୋଜ ଖୋଜ ଏତେ କାଳେ ଲଭିଛି କଢରେ ।
ବାନ୍ଧ ଯତନରେ ଲୁହାଶିକୁଳରେ
ରଖିବ ଏହାଙ୍କୁ ନେଇ ବନ୍ଦଘରେ,
ଭେଟିଲେ ଛୁଟିବା ପାଠ ନାହିଁ ମୋ ଜାଣରେ ।

ସଦା—ବାହୁଆ ବାଈଜ, ବାହୁଆ, ସାବାସ୍ ସାବାସ୍! ଆସ ଆସ, ବାନ୍ଧ ବାନ୍ଧ । (କର ପ୍ରଦର୍ଶନ)

ବନ୍ଧୁଗଣ—(କର ପ୍ରଦର୍ଶନ କର) ବାନ୍ଧ ବାନ୍ଧ, ଶିକୁଳ ଅଣ, ଅଚ୍ଛା କର ବାନ୍ଧ, ବନ୍ଦଘରକୁ ଚ୍ଳଲ, ଅଭି ଚ୍ଳଲ, ଜଲ୍ଦିର ଚ୍ଳଲ ।

ଜମ୍ବୁ ବ—ବାଈଜଙ୍କୁ ଥୋଡ଼ାଘା ସର୍ବପ୍ ପିଆଅ ।

ସଦା—ଖଇରାତ, ଖଇରାତ, ଖଇରାତ !

ଖଇ—ହଜୁର, ହଜୁର, ହଜୁର !

ସଦା—ଖଇରାତ, ପିଲାଓ ବାଈଜକୁ, ସର୍ବପ ପିଲାଓ, ସର୍ବପ ପିଲାଓ ।

( ଖଇରାତର ବାଇନଙ୍କୁ ବୋତଲ ପ୍ରଦାନ । )

ଜମ୍ବୁ ବ—ପାନ ଦିଅ, କୋକେନ ବାହାର କର ।

ସଦା—ଖଇରାତ, ଖଇରାତ, ଖଇରାତ !

ଖଇ—ହଜୁର, ହଜୁର, ହଜୁର !

ସଦା—କୋକେନ ଲଗାଲେ. କୋକେନ ଲଗାଲେ, ବାଈଜକୁ ପାନ ଦେଓ ।

( ଖଇରାତର ବାଇନଙ୍କୁ କୋକେନ ପ୍ରଦାନ । )

୩ୟ ବ—ଅଫିମ ଅଛି ? ଉତ୍କଳର ଅଫିମ ଖାନ୍ତୁ ।

ସଦା—ଖଇରାତ, ଦେଓ ଦେଓ, ସବ୍ ଲୋକାଁକୋ, ସବ୍ ଦେଖ୍‌ଲାଓ, କୋନ୍ କ୍ୟା ଚାହାତା ହେ ଦେଦୋ ।

୩ୟ ବ—ବାଇକ, ଏ ଅକ୍ଷୟ ଭଣ୍ଡାର, ଏମିତ ସେମିତ ନୁହେଁ, ଯାହା ଚାହିଁବ, ତାହା ମିଳିବ ।

( ଖଇରାତର ମଦ, ଅଫିମ, ଗଞ୍ଜା ଓ କୋକେନ ବାକ୍ସ ପ୍ରଦର୍ଶନ । )

ବାଇ—ଏ ସବୁଯାକ ହେଲେ ବ ଆମ ସମାଜମାନଙ୍କୁ ସନ୍ତୋଷ ନଆଣ୍ଣ ।

ସଦା—ଖଇରାତ, ଖଇରାତ, ଖଇରାତ !

ଖଇ—ହଜୁର, ହଜୁର, ହଜୁର !

ସଦା—ହାମାର ହାତବାକ୍‌ସ୍ ଲେଆଓ ।

( ଖଇରାତର ପ୍ରସ୍ଥାନ । )

୧ମ ବ—ଲେଆଓ, ଲେଆଓ, ଜଲ୍‌ଦି ଲେଆଓ ।

( ଖଇରାତର ବାକ୍ସ ସହ ପ୍ରବେଶ ଏବ ବାକ୍ସ ଉନ୍ମୁକ୍ତ । )

୩ୟ ବ—ବାଇକ, ଏଥର ଦେଖ, ଏ ଦେଶୀ ସରାପ ପାଞ୍ଚ ବୋତଲ ଭରା, କେତେ ପିଇବ ପିଅ । ଅଫିମ, ଏ ଚାରି ଭରି ହେବ । ଏ ଗଞ୍ଜା, ଗଡ଼ଜାତ ଗଞ୍ଜା, ସେରେ ହେବ । ପତ୍ର, ଏ ଅସଲ ପତ୍ର, ବାବୁଙ୍କ ବଗିଚାର ପତ୍ର, ଚଟକା ମାଲ । ଏ କୋକେନ୍, ଅସଲ ଜରମାନୀ କୋକେନ୍, ବଡ଼ ମଜାର ଜନସ । ବାବୁ ଏହାକୁ ପ୍ରଥମେ ଏ ଦେଶକୁ

ଅଣାଇଛନ୍ତି, ଏଥି ସକାଶେ ବାବୁଙ୍କ ନାମ ଗୃହଅଛେ ବିଖ୍ୟାତ, ପାନ ସଙ୍ଗରେ ଖାଅ, ଏହାର ମଜା ବୁଝିବ ।

ବାଇ—ବଣ ସଲାମ୍, ହଜୁରକୁ ବଣ ସଲାମ୍ ।

( ଜଣେ ସମାଜର ସିଂହବାଦନ, ବାଇ, ଜନ୍ମ ବନ୍ଧୁ ଓ ସମସ୍ତ ସମାଜମାନଙ୍କର ଉପସ୍ଥିତ ପରିଚ୍ଛଦ ନିକ୍ଷେପପୂର୍ବକ ଏକ ଜଣ ଇନସ୍ପେକ୍ଟର, ଏକ ଜଣ ସବ୍ ଇନସ୍ପେକ୍ଟର ଓ ଅନ୍ୟ ସବେ କନେଷ୍ଟବଲ ବେଶରେ ଦଣ୍ଡାୟମାନ । )

ଇନ୍—ପକଡ଼ୋ ସବ୍‌କୋଇକୁ, ବାନ୍ଧୋ ସବ୍‌କୋଇକୁ ।

(କନେଷ୍ଟବଲମାନଙ୍କର ସଦାନନ୍ଦ ଓ ୧ମ ଏବ ୨ୟ ବନ୍ଧୁଙ୍କୁ ହସ୍ତରେ ଶୃଙ୍ଖଳ ବନ୍ଧନ । )

ଖଇରାତ !

ଖଇ—ହଜୁର ! ମେ ଖିଦ୍‌ମତ୍‌କାର ହୌଁ, ମେରା କୁଛ କସୁର ନେହିଁ, ମେ ହୁକୁମ୍‌ବରଦାର ହୌଁ ।

ଇନ୍—ତୁମ୍ ଏ ବାକ୍ସ ଦୋନୋକୁ ପକଡ଼ୋ, ହାମାରା ସାଥ୍ ଚଲୋ ।

ଖଇ—ହଜୁର, ବନ୍ଦା ହାଜର ହେ ।

( ଖଇରାତର ବାକ୍ସ ଧାରଣ । )

ଇନ୍—ଆଜ ବହୁକାଳ ପରେ ଶ୍ରମ ସଫଳ ହେଲା । ପିତା ମହାଜନ କର ପଞ୍ଜାପ୍ରତିବାସୀ ସମସ୍ତଙ୍କର ଗଳାଟିମାନ ହାତ ଟିପ ମଧ୍ୟରେ ରଖିଛୁ । ପୁଣି ଗୁଡ଼ିକ ଅଫିମ ଗଞ୍ଜା ଗୁଲି ଓ ମଦ ପ୍ରଭୃତିର ଗୋଟିଏ ଅବକାରୀ ଗୋଦାମ

ସଜାଡ ଦେଇଛନ୍ତି । କୋକେନର ନାମ ଓଡ଼ିଶାରେ
ଆଦୌ ଜଣା ନ ଥିଲା । ଏହି ଅଲ୍ପ ଦିନ ମଧ୍ୟରେ ଏ
ପାଜି ବସ୍ତୁର କୋକେନ ଆଣି ଏ ପ୍ରକାର ଅନେକ
ଯୁବକଙ୍କୁ ନଷ୍ଟ କରି ଦେଲାଣି । ସାହସ କରି କେହି
ଗିରଫ୍‌ଦାର କରି ପାରୁନ୍ତି ନାହିଁ । ଏଥର ବହୁ କଷ୍ଟରେ
ବହୁ ଯତ୍ନରେ ଗିରଫ୍‌ଦାର ହେଲା । ମାଲ ଯଥେଷ୍ଟ
ମିଳିଅଛି । (ଆହୃ ବନ୍ଦୁ ହୋଇଥିବା କନେଷ୍ଟବଲ ପ୍ରତି )
ତୁମେ ଏଥିରେ ବହୁ ଯତ୍ନ ଓ ପରିଶ୍ରମ କରିଛ,
କୌଶଳ ମଧ୍ୟ ଦେଖାଇଛ । ତୁମକୁ ଯଥେଷ୍ଟ ପୁରସ୍କାର
ମିଳିବ, ତୁମେ ପ୍ରମୋସନ ମଧ୍ୟ ପାଇବ ।

( ସମସ୍ତଙ୍କର ପ୍ରସ୍ଥାନ । )



## ତୃତୀୟ ଦୃଶ୍ୟ ।

### ଚଉଧୁରୀଙ୍କ ଗୃହ ।

( ଚଉଧୁରୀ ଓ ମଦନମୋହନ ପ୍ରବେଶ । )

ଚଉ—ଦେଖ ମଦନମୋହନ, ଆମ୍ଭେ ତୁମ୍ଭଙ୍କୁ ବାରମ୍ବାର କହୁ-
ଅଛୁଁ, ତୁମ୍ଭେ ଏଠାକୁ ଆସିବ ନାହିଁ, ତୁମ୍ଭେ ତାହା
ନ ମାନି ବାରମ୍ବାର ଆସି ଆମ୍ଭଙ୍କୁ ବିରକ୍ତ କରୁଅଛ ।
ନିଜର ଭଦ୍ରତା କିରୂପେ ରକ୍ଷା କରିବାକୁ ହୁଏ, ତାହା
ତୁମ୍ଭେ ଜାଣ ନାହିଁ । ତୁମ୍ଭଙ୍କ ଏବେ ମଧ୍ୟ କହୁଅଛୁଁ,

ଯେବେ ନିଜର ଭଦ୍ରତା ନିଜେ ରକ୍ଷା ନ କର, ତେବେ ଅପମାନିତ ହେବ ।

ମଦନ—କଣ ! ଅପମାନିତ ହେବ ! ଭଦ୍ରତା ! ଭଦ୍ରତା କାହାକୁ କହନ୍ତି ? ଭଦ୍ରତା କାହା ସହିତ କରିବାକୁ ହୁଏ ? ଭଦ୍ରଲୋକ କିଏ ? ଆପଣ ଭଦ୍ରଲୋକ ? ଆପଣଙ୍କୁ ଯେବେ ଭଦ୍ରଲୋକ କୁହାଯିବ, ତେବେ ଜଗତରେ ଅଭଦ୍ର କିଏ, ମୁଁ ସ୍ଥିର କରି ପାରୁ ନାହିଁ ! ମୁଁ ନାବାଳକ ଥିଲି, ବଳେ ବଳେ ଦରଖାସ୍ତ କରି ମୋର ଅଭିଭାବକ ନିଯୁକ୍ତ ହେଲେ । ଆପଣଙ୍କୁ ଭଦ୍ରଲୋକ ବୋଲି ବିଶ୍ୱାସ କରି ତହିଁର ଉପଯୁକ୍ତ ପରିଣାମ ଭୋଗ କରୁଅଛି । ଆପଣ ମତେ ଭୁଲାଇ ମୋଠାରୁ ରସିଦ ଖଣ୍ଡି ଲେଖାଇ ନେଲେ । ମୁଁ ନିର୍ବୋଧ, ସେତେବେଳେ ସୁଦ୍ଧା ଚିହ୍ନିଲି ନାହିଁ ଯେ ଆପଣ କି ପ୍ରକାର ଭଦ୍ରଲୋକ । ବର୍ତ୍ତମାନ ସମ୍ପତ୍ତିର ଭାର ଗ୍ରହଣ କରି ଦେଖୁଅଛି ଯେ ଦୁଇଟା ବର୍ଷରେ ମୋର ସମସ୍ତ ସମ୍ପତ୍ତିଟା ଫମ୍ପା କରି ଦେଇଅଛନ୍ତି । ନିଜ୍‌ଯୋତ, ନିଜ୍‌ଚାଷ, ଅନାବାଦ ସମସ୍ତ ନିଜର ସ୍ତ୍ରୀ ଓ ପୁତ୍ରମାନଙ୍କ ନାମରେ ପାଟ୍ଟା ସ୍ଥିତିବାନ୍ ହୋଇଅଛି । ବାଗ୍ ବଗିଚ୍ ତୋଟା ବାଡି କୌଣସିଠାରେ ଗୋଟିଏ ବୋଲି ଗଛ ନାହିଁ । ଖାତକମାନଙ୍କଠାରୁ ସମସ୍ତ ଟଙ୍କା କଉଡି ଅଦାୟ କରି ନେଇ ଖାତାରେ ଲେଖିଦେଲେ "ଗରଜାଏ" । ଏହି ତ ତୁମ୍ଭର ଭଦ୍ରତା ? ତୁମ୍ଭେ ଅନରେରି ମାଜିଷ୍ଟ୍ରେଟ ଚୌକିର ଖଣ୍ଡି ପାଇ ଚତୁର୍ଭୁଜ ହୋଇଅଛ ବୋଲି ତୁମ୍ଭଙ୍କୁ ଭଦ୍ରଲୋକ

କହିବ ? ତୁମ୍ଭେ ଠକାଏତ, ତୁମ୍ଭେ ଧପାବାଜ, ତୁମ୍ଭେ ଜୁଆଚୋର !

ଚଉ—ଦେଖ ମଦନ ! ସାବଧାନ ହୋଇ କଥାବାର୍ତ୍ତା କହିବ । ଆମ୍ଭେ ଏ ବିଷୟ ମାଜିଷ୍ଟ୍ରେଟ ସାହେବଙ୍କୁ ଜଣାଇବୁଁ, ତୁମ୍ଭ ନାମରେ ମାନହାନିରେ ନାଲିସ ଦାଏର କରିବୁଁ ।

ମଦନ—(ଉପହାସ କରି) ମାନହାନି ! ତୁମ୍ଭର ପୁଣି ମାନ ! ତୁମ୍ଭେ ମାନହାନି ସକାଶେ ନାଲିସ କରିବ ! ଅଚ୍ଛା, ଦେଖାଯାଉ, ତୁମ୍ଭେ ଯଦି ପ୍ରକୃତ ନାଲିସ କର, ତେବେ ମୁଁ ଜାଣିବି ଯେ ତୁମ୍ଭର ମାନ ମହତ୍ତ୍ୱ ଅଛି, ତୁମ୍ଭେ ବାସ୍ତବିକ ଭଦ୍ରଲୋକ । ଯେବେ ନାଲିସ ନ କର, ତେବେ ତୁମ୍ଭେ ପ୍ରକୃତ ଠକାଏତ, ପ୍ରକୃତ ଜୁଆଚୋର, ପ୍ରକୃତ ଧପାବାଜ !

ଚଉ—ତୁମ୍ଭେ ଧନକୁବେର ନିତାନ୍ତ ଅସଭ୍ୟ ହୋଇ ଉଠୁଅଛ ।

ମଦ—ଆଜ୍ଞା, ଆପଣଙ୍କର ଗାର୍ଜିଅନ୍ସିପରୁ ଉଦ୍ଧାର ପାଇ ମୋହର ଏ ଦୁର୍ଦ୍ଦଶା ଘଟିଅଛି । ଆପଣ ମୋହ ନାମରେ ନାଲିସ କରନ୍ତୁ । କଥାଟା ମାଜିଷ୍ଟ୍ରେଟ ସାହେବଙ୍କ କାନରେ ପଡୁ, ମାଜିଷ୍ଟ୍ରେଟ ସାହେବ ଆପଣଙ୍କୁ ଚିହ୍ନି ପାରିବେ, ଆପଣଙ୍କ ଚାକରିର ଆୟ ବ୍ୟୟର ହିସାବ ଧରି ଇନ୍କମ୍ ଟେକ୍ସ ଧାର୍ଯ୍ୟ କରିବେବେ ।

( ଗଜସିଂହ ଫିହର ପ୍ରବେଶ । )

ଗଜ—ହଜୁର, କାଲି ରାତିରେ ବଡ଼ ବାବୁ ଗିରଫ୍ଦାର ହୋଇ ଯାଇଛନ୍ତି, ବର୍ତ୍ତମାନ ଗାରଦରେ ଅଛନ୍ତି ।

ଚନ୍ଦ୍ର—(ପରକ୍ଷଣେ) କଣ ! କଣ ! ବଡ଼ ବାବୁ ! ସଦାନନ୍ଦ ! ସଦାନନ୍ଦ ଗିରଫ୍ଦାର ହୋଇଛନ୍ତି ?

ଗଜ—ହଜୁର୍ ହିଁ, ବଡ଼ ବାବୁ, ସଦାନନ୍ଦ ବାବୁ । ( ରୋଦନ ) ଓହୋ ! ହୋ ହୋ ! ଅଜ୍ଞା ଏଡ଼େମୋଟ ନୁହା କଡ଼ ହାତରେ ପଡ଼ଛୁ, ହାତକୁ ତ କାନ୍ଥୁଥିବ !

ଚନ୍ଦ୍ର—କାହିଁକି ଗେରଫ୍ଦାର ହେଲେ ?

ଗଜ—ଅଜ୍ଞା ଖାଲି ମିଛରେ । ( ରୋଦନ ).

ଚନ୍ଦ୍ର—କଣ କହ ପୋଲିସ ଗିରଫ୍ଦାର କଲା ?

ଗଜ—ଖାଲି ମିଛ କହ ଅଜ୍ଞା, ଖାଲି ମିଛ କହ ।

ଚନ୍ଦ୍ର—କଣ ମିଛ କହଲା ?

ଗଜ—ଖାଲି ତୁଛ ମିଛ କହଲା ।

ଚନ୍ଦ୍ର—ସଦାନନ୍ଦ କଣ କରୁଥିଲେ ବୋଲି ଗରଫ୍ଦାର କଲା ?

ଗଜ—କଛୁ କରୁ ନ ଥିଲେ ବୋଲି ଗେରଫଦାର କଲା ।

ଚନ୍ଦ୍ର—ଅରେ ଘଣ୍ଟଣାଟା କଣ ?

ଗଜ—ଘଣ୍ଟଣାଟା ମିଛ ।

( ଜଣେ ଗୁମାସ୍ତାର ପ୍ରବେଶ । )

ଚନ୍ଦ୍ର—ମଦନ ବାବୁ ଅପଣ ଯାଉନ୍ତୁ, ଆପଣଙ୍କ ବିଷୟ ପରେ ବୁଝିବା ।

ମଦନ—ଏ ଗୋଟାଏ କଥା ?' ଅପଣଙ୍କର ଏପରି ବିପଦର

ସମସ୍ତ, ଘଟଣାଟା ସମ୍ପୂର୍ଣ୍ଣରୂପେ ନ ଶୁଣି ଗଳ୍ପିବା ମୋର ଉଚିତ ହେଉ ନାହିଁ ।

ଶ୍ୟାମା—ବଡ଼ ବାବୁ କାଲି ବଗିଚା ଘରେ କେତେକ ଭଦ୍ର-ଲୋକଙ୍କ ସହିତ ବସି ଗାଣ ବଜାଣ କରୁଥିଲେ, ଇନ୍ସ୍ପେକ୍ଟର ଆସି ତାଙ୍କୁ ଏବଂ ଅନ୍ୟ ଭଦ୍ରଲୋକମାନଙ୍କୁ ଗିରଫ୍‌ଦାର କରି ନେଇ ଯାଇଅଛି ।

ନଉ—ଏଥିରେ ଗିରଫ୍‌ଦାର କରିବାର କଣ ଥିଲା ?

ଗଜୁ—ଏଣିକି ହୁକୁମ ଜାରି ହେଲାଣି, ଯେ ଗାଣ ବଜାଣ କରିବ, ତାକୁ ଧରି ନେବେ ।

ଶ୍ୟାମା—ଗଞ୍ଜେଇ, ଅଫିମ, ମଦ ଓ କୋକେନ ଥିବ ବୋଲି ସନ୍ଦେହ କରି ଧରି ନେଇଅଛି ।

ରଉ—ମୁଁ ଅନେକ ଦିନରୁ ସନ୍ଦେହ କରୁଥିଲି ଯେ, ଏମାନେ ନିଶା ଖାଇବାକୁ ଆରମ୍ଭ କରିଅଛନ୍ତି ।

ମଦନ—(ଉପହାସ କରି) ହେଁ ହେଁ, ଆପଣ ଯୋଗ୍ୟ ପିତା ଥିବାରୁ ଅନେକ ଦିନରୁ କେବଳ ସନ୍ଦେହ କରି ପୁତ୍ର-ମାନଙ୍କ ଇଜ୍ଜତ୍‌ଟା ସମ୍ଭାଳି ରଖିଅଛନ୍ତି । ମାତ୍ର ଅନ୍ୟ ସମସ୍ତେ ଜାଣନ୍ତି ଯେ, ଆପଣଙ୍କ ପୁତ୍ରମାନେ ଏ ସହରର ମଧ୍ୟରେ ସର୍ବୋତ୍କୃଷ୍ଟ ନିଶାଖୋର । ଏପରି ନିଶା ନାହିଁ, ଯାହା ସେମାନେ ନ ଖାନ୍ତି । ଆପଣଙ୍କ ଜ୍ୟେଷ୍ଠ ପୁତ୍ର ଏ ପ୍ରଦେଶକୁ କୋକେନ ପ୍ରଥମ ଆଣାଇଅଛନ୍ତି ବୋଲି ବାହାଦୁର କରନ୍ତି । ସେ ଏତେ ମାତ୍ରରେ ନିତାନ୍ତ କମରେ

ଗୃହ ପାଞ୍ଚ ଶତ ଟଙ୍କାର କୋକେନ ଉଡ଼ାଇ ଦେଉଅଛନ୍ତି । ଆପଣ ଅସମର୍ଥ ବୁଝି ଲୋକମାନଙ୍କ ଗଳାରେ ଛୁରି ବସାଇ ବିଶ୍ୱାସଘାତକତା କ୍ରମେ ଯେପରି ଅର୍ଥ ଉପାର୍ଜ୍ଜନ କରିଅଛନ୍ତି, ସେ ଅର୍ଥ କୌଣସି ପ୍ରକାର ସତ୍ କାର୍ଯ୍ୟରେ ବ୍ୟୟ ହେବାର ସମ୍ଭବ ନୁହେ । ଆପଣଙ୍କ ଗୁଣବାନ୍ ପୁତ୍ରମାନେ ତାହା ବ୍ୟୟ କରିବାର ଉପଯୁକ୍ତ ମାର୍ଗ ଆବିଷ୍କାର କରିଅଛନ୍ତି ।

ରଉ—ଗୁମାସ୍ତା ! ଏ ସବୁ କଣ ? ଦାରୋଗା ମାଲ ସହିତ ଚାଲାଣ ଦେଇଅଛନ୍ତି ପରା ?

ଗୁମା—ଆଜ୍ଞା ହିଁ, ମାଲ ସହିତ ଚାଲାଣ ଦେଇଅଛନ୍ତି ।

ରଉ—ବର୍ତ୍ତମାନ ଉପାୟ କଣ ? ମଦନ ବାବୁ ! ଆପଣ ଅନୁଗ୍ରହ କରି ବର୍ତ୍ତମାନ ଆସନ୍ତୁ, ଆପଣଙ୍କ ବିଷୟ ପରେ ବୁଝିବା ।

ମଦନ—ଅଚ୍ଛା, ମୁଁ ବର୍ତ୍ତମାନ ଆସୁଛି ।

(ପ୍ରସ୍ଥାନ ।)

ରଉ—ଗୁମାସ୍ତା ! ଏବେ ଉପାୟ କଣ ? କଣ କରାଯିବ, ମତେ କୁହ ।

ଗୁମା—ଚେଷ୍ଟା ଲଗାଇଅଛି । ତିନ ହଜାର ଟଙ୍କାଟି ଆଗେ ଜମା କରିବାକୁ ହେବ, ତା ପରେ ଯେଉଁ କଥା । ଇନ୍‌ସ୍ପେକ୍ଟର ନକେ ଗିରଫ୍‌ଦାର କରିଅଛନ୍ତି । ତେଣୁ ରକ୍ଷା ହିଁର ବରି କହ ହେଉ ନାହିଁ ।

ରଉ—ତିନ ହଜାର ଥାଉ ବା ପାଞ୍ଚ ହଜାର ପଡୁ, ଏତେବେଳେ

ଟଙ୍କାକୁ ଗଣ୍ଠିବାର ବେଳ ନୁହେ । ତୁମ୍ଭେ ଶୀଘ୍ର ଯାଅ, ଟଙ୍କା ନେଇ ଯାଅ । ପୋଲିସକୁ କେବେଁ ବିଶ୍ୱାସ କରିବ ନାହିଁ ।

( ଉଭୟଙ୍କର ପ୍ରସ୍ଥାନ । )



## ଚତୁର୍ଥ ଦୃଶ୍ୟ ।

( ତରଙ୍ଗିଣୀର ପ୍ରବେଶ )

ତର—(ସ୍ୱଗତ) ମୁଁ ସେହି ତରଙ୍ଗିଣୀ ! ମତେ କହନ୍ତି ପାଗଳୀ । ଆରେ ବାପ୍‌ରେ ! ପିତା କହନ୍ତି ପାଗଳୀ ! ମୁଁ କାହିଁକି ପାଗଳୀ ହେବି ! ଏ ଦୁନିଆ ପାଗଳ ! ଏ ପୃଥିବୀ ପାଗଳୀ ! ଧୂଥିବାଟା ପାଗଳୀ ନ ହେଲେ ସୂର୍ଯ୍ୟ ଚାରିଅଡ଼େ ବୁଲନ୍ତା କାହିଁକି ! ଏ ଚନ୍ଦ୍ର ପାଗଳ ! ପୃଥିବୀ ଚାରିଅଡ଼ରେ ଭ୍ରମଣ କରେ ! ଏ ଆକାଶ ପାଗଳ ! ବିନା ଉଦ୍ଦେଶ୍ୟରେ ପୃଥିବୀକୁ ବେଷ୍ଟନ କରିଅଛି । ମୁଁ ପାଗଳୀ ନୁହେ ! ମୁଁ ପାଗଳୀ ନୁହେ ! ମତେ ଯେ ପାଗଳୀ କହେ, ସେହି ପାଗଳ ! ମୋର ପିତା ଭୁକ ପାଗଳ ! ମୋର ପିତା ଅର୍ଥରେ ପାଗଳ ! ମୋର ପିତା ଅନ୍ଧ ! ସେ ଅର୍ଥ ସାହାଯ୍ୟରେ ସ୍ୱର୍ଗାରୋହଣ କରିବେ ! ଏ ବଡ଼ ପାପାଶା ! ଏ ବୃଥା ଆଶା ! ପୃଥିବୀର ଆଶା ପୂର୍ଣ୍ଣ ହେଲା ନାହିଁ ! ଚନ୍ଦ୍ରର ଆଶା ବ୍ୟର୍ଥ ହେଲା ! ଆକାଶର ଆଶା ବିଫଳ ହେଲା ! ଏ ଆଶା ପୂର୍ଣ୍ଣ ହେବ ନାହିଁ ! ଏ ଆଶା ବିଫଳ ହେବ ! ହେ ଜଗଦୀଶ ! ବିଷ କାହିଁ ମିଳିବ ! ମତେ ବିଷ ଦିଅ, ମୁଁ ବିଷ ପାଇଲେ ସ୍ୱର୍ଗଲାଭ

କରିବ ! ଜଗତରେ ସ୍ୱାର୍ଥ ମୂଳ ! ସ୍ୱାର୍ଥସିଦ୍ଧି ହେଲେ ସବୁ ସିଦ୍ଧି ! ମୋର ସ୍ୱାର୍ଥ ବିଷପାନ ! ଜଗଦୀଶ ! ପିତାଙ୍କ ଅପେକ୍ଷା ତୁମେ ଅନ୍ଧୁର ପାଗଳ ! କାହିଁକି ଏ ସୃଷ୍ଟିବିଧାନ କଲ ! ତୁମର ଉଦ୍ଦେଶ୍ୟ କଣ ? ତୁମର ସ୍ୱାର୍ଥ କଣ ? ତୁମେ ମହା ପାଗଳ ! ତୁମେ ବଡ଼ ପାଗଳ !

( ପାଗଳୀର ପ୍ରସ୍ଥାନ । )



## ପଞ୍ଚମ ଦୃଶ୍ୟ ।

### ଉପବନ ।

( କୁନ୍ତଳା ଓ ସଖୀମାନଙ୍କର ପ୍ରବେଶ । )

### ଗୀତ ।

ଆସ ଲୋ ସଜନି ତୋଳ ଲୋ ଫୁଲ,
ଦେଖ କେତେକାଳ ଫୁଟିଛି ଫୁଲ ।

ଜାଇ ଯୂଇ ଚମ୍ପା    ମାଳତୀ ମରୁଆ
ସୌରଭେ ଆକୁଳ ଭ୍ରମରକୁଳ ।
ସଜ ଫୁଲ ବାଛି    କେତେ ମଧୁମାଛି
ମଧୁ ପିଉଛନ୍ତି ହୋଇ ସେ ଭୁଲ ।
ତୋଳ ଲୋ ଟଗର    ତୋଳ ନାଗେଶ୍ୱର
ତୋଳ କୁରୁଅନା ତୋଳ ବଉଳ ।
ହୋଇ ଗୋଟି ଗୋଟି    ଦେଖ କୋଟି କୋଟି
କେତେ ଶୋଭୁଛନ୍ତି ମଲ୍ଲୀମୁକୁଳ ।

୧ମ ସଖୀ—ସଜନି ଲୋ ! ଏ ଫୁଲଗୁଡ଼ିକୁ ଦୃଷ୍ଟି ଦେଲେ କାହା ମନ ମୋହିତ ନ ହେବ ! ଅହାହା ! କି ସୁନ୍ଦର ଦିଶୁଛନ୍ତି !

୨ୟ ସଖୀ—ଉପବନ ଖଣ୍ଡିକର ଶୋଭା ଦେଖିଲେ ପ୍ରେମିକ ପ୍ରେମିକାଙ୍କର ପ୍ରାଣ ଆକୁଳ ହୋଇ ଉଠିବ ।

୩ୟ ସଖୀ—ଦେଖ, ଏହି ଭ୍ରମର ଅଳି ମଧୁମକ୍ଷିକାଗୁଡ଼ିକ ଉପର ପ୍ରେମରେ ଉନ୍ମତ୍ତ ହୋଇ ବୁଲୁଛନ୍ତି !

୧ମ ସଖୀ—(କୁନ୍ତଳା ପ୍ରତି) ସଜନି ଗୋ, ଦେଖୁଛି ? ଏ କୀଟ ପତଙ୍ଗ ସବୁ ପ୍ରେମରସ ପାନ କଲେ, ତୁମେ ଯୁବତୀ ହୋଇ ଅଦ୍ୟାପି ପ୍ରେମର ସ୍ୱାଦୁ ପାଇଲ ନାହିଁ !

୨ୟ ସଖୀ—ବୃକ୍ଷ ବିନା ଲତାର ଶୋଭା ନାହିଁ, ଯୁବାସଙ୍ଗ ବିନା ଯୁବତୀର ଶାନ୍ତି ନାହିଁ, ଜୀବନ ଅକାରଣ !

୩ୟ ସଖୀ—ଆମ୍ଭେମାନେ ଏତେ ଯତ୍ନ କଲୁଁ, କେତେଆଡ଼େ କେତେ ପଦାର୍ଥ ଦେଖାଇଲୁଁ; ଏତେପ୍ରକାର ଏତେ କଥା କହିଲୁଁ; କିନ୍ତୁ କାହିଁରେ ସଖୀର ମନ ଟଳିଲା ନାହିଁ !

ଗୀତ ।

ପ୍ରୀତିରସ ମଧୁରସ କାହିଁ ତାକୁ ସରି,
ଚାଖିଲେ ଲଭିବ ପ୍ରାଣ ଏ ଜୀବନ ଭରି ।
ନାହିଁ ପ୍ରେମ ଯେ ଜୀବନେ, ନାହିଁ ସୁଖ ସେ ଜୀବନେ,
ପ୍ରୀତିବିହୀନ ଜୀବନ-ପାଷାଣ ପରି ।

୧ମ ସଖୀ—(କୁନ୍ତଳା ପ୍ରତି) ପ୍ରିୟ ସଖି ! ତୁମେ ଅତି ବାଳକା, ତୁମର ବାଳକା ବୁଦ୍ଧି ଛାଡ଼ ଗଲା ନାହିଁ । ଜଗତରେ ଯେତେ ଯାହା ସୁଖ ଅଛି, ନାରୀମାନଙ୍କର ଦାମ୍ପତ୍ୟ-ପ୍ରଣୟର ଯେ ସୁଖ ତାହା ସବୁଠାରୁ ଶ୍ରେଷ୍ଠ । ତୁମେ ବୁଝି ନାହିଁ, ପିତା ମାତାଙ୍କ କଥା ଅବଜ୍ଞା କର ବିବାହ କରିବାକୁ ମନା କରୁଛ ।

୨ୟ ସଖୀ—ପିତା ମାତାଙ୍କ କଥା ଲଙ୍ଘନ କରନ୍ତୁ ନାହିଁ । ପିତା ମାତା ଦେଖି ଶୁଣି ବୁଝି ସୁଝି ତୁମ ଲାଗି ବର ଠିକଣା କଲେ, ତୁମେ ଏପର ଗୋଟାଏ ଜିଦ୍ ଧରୁଛ କାହିଁକି ?

୩ୟ ସଖୀ—ପିତା ମାତାଙ୍କୁ ଧନ ଦେବାକୁ ପଡ଼ୁଛି ବୋଲି ତୁମେ ବିଭା ହେବାକୁ ମନା କରୁଛ ? କଣ କହିବେ, ପିତା ମାତା ତୁମର ଭଲକୁ ଚାହିଁ ଯାହା ପଡ଼ିବ ତାହା ସେମାନେ ଖୁସି ହୋଇ ଦେଉଛନ୍ତି । ଆଜି କାଲି ତ କାଳ ହେଲା ଯେଉଁପରି, ଟଙ୍କା କଉଡ଼ି ନ ଦେଲେ ମନନାଖି ବର ମିଳିବ କେଉଁଠୁ ? ଯୋଉଁଠି ବୁଝିଲେ ସେଠି ତ ଯେଉଁପରି ଧନ ଖୋଜଲେ । ମୂର୍ଖଆ ମୂର୍ଖଟାଏ ତ ଆଉ ଧରି ଆଣି ବାହା କରି ଦେବେ ନାହିଁ । ଛି, ତୁମେ ସେପରି ବାସ୍ତୁଣୀ ହୁଅ ନା ।

୧ମ ସଖୀ—ତୁମେ ଦେଖୁ ନାହିଁ, ଗଛ ପତ୍ରଠାରୁ ପଶୁ ପକ୍ଷୀ ଯାଏ ସମସ୍ତେ କିପରି ପ୍ରେମରେ ଅଛନ୍ତି, ପକ୍ଷିଗୁଡ଼ାକ ଖରା, ଶୀତ, ବର୍ଷା, ଝଡ଼ ସବୁ ସହି ଗଛବୃକ୍ଷରେ ବାସ କରନ୍ତି; ପଶୁମାନେ ଫଳ ମୂଳ ଘାସ ପତ୍ର ଖାଇ ବଣ ବୁଦାରେ

ପଡ଼ିଥାନ୍ତି; ତାଙ୍କୁ ଏ ସବୁ କଷ୍ଟ ବାଧୁ ନାହିଁ କାହିଁକି ? କେବଳ ଦାମ୍ପତ୍ୟପ୍ରେମରେ ସବୁ କଷ୍ଟ ଭୁଲି ରହନ୍ତି । ଯୋଉଁଠି ଦେଖ ଯୋଡ଼ାକୁ ଯୋଡ଼ା ଅଛନ୍ତି ବୋଲି ତାଙ୍କୁ ସବୁ ଦୁଃଖ ସୁଖ ଲାଗୁଛି । ତୁମେ ବିବାହ କର, ସେ ସୁଖ ବୁଝି ପାରିବ, ସ୍ୱାମି ସଙ୍ଗରେ ଯେ କି ସୁଖ, ସେ ସୁଖର ସ୍ୱାଦୁ ଥରେ ଚାଖିଲେ ଜଗତର ସବୁ ଦୁଃଖ ପାସୋରି ଯିବ ।

କୁନ୍ତଳା—ସଜନି ଲୋ ! ତୁମେମାନେ ଅକାରଣରେ ମୋ ଲାଗି ବ୍ୟସ୍ତ ହେଉଛ । ଯେଉଁ ପ୍ରେମ କଥା ମତେ କହୁଛ, ସେ ପ୍ରେମ ସମାଜରେ କାହିଁ ? ସେ ପ୍ରେମ ପଶୁ ପକ୍ଷୀ ମଧ୍ୟରେ ଅଛି, ସେ ପ୍ରେମ କୀଟ ପତଙ୍ଗ ମଧ୍ୟରେ ଅଛି, ସେ ପ୍ରେମ ତରୁ ଲତା ପତ୍ର ପୁଷ୍ପ ମଧ୍ୟରେ ଥାଇ ପାରେ, ମାତ୍ର ସେ ପ୍ରେମ ମନୁଷ୍ୟସମାଜରୁ କ୍ରମେ କ୍ରମେ ବିରଳ ହୋଇ ଯାଉଛି । ସେ ପ୍ରେମ ଶିକ୍ଷିତ ସମାଜରେ ଆଦୌ ନାହିଁ । ଶିକ୍ଷିତ ଯୁବକମାନେ ବିଜ୍ଞାନଶାସ୍ତ୍ର ଅଧ୍ୟୟନ କରି ସମସ୍ତ ଜଗତକୁ କୃତ୍ରିମ କରି ବସିଲେଣି । ସୃଷ୍ଟିକର୍ତ୍ତାଙ୍କର ଅସ୍ତିତ୍ୱ ମଧ୍ୟ ଅସ୍ୱୀକାର କରୁଛନ୍ତି । କହନ୍ତି, ସବୁ ପ୍ରକୃତିର କ୍ରିୟା, ସବୁ କୃତ୍ରିମ । ଶିକ୍ଷିତ ବ୍ୟକ୍ତିଙ୍କର କଥାବାର୍ତ୍ତା, ହର୍ଷ, ବିଷାଦ , ଶାନ୍ତି, ଅଶାନ୍ତି, ପ୍ରେମ, ଅପ୍ରେମ, ବୁଦ୍ଧି, ବିବେକ, ଜ୍ଞାନ, ଧର୍ମ, କର୍ମ ସବୁ କୃତ୍ରିମ ହୋଇ ଗଲାଣି । ଆଜି ଅନ୍ତଃକରଣର ବିକାଶକୁ କାର୍ଯ୍ୟ ବୋଲାଯାଏ ନାହିଁ । ଅନ୍ତଃକରଣ ଓ କାର୍ଯ୍ୟ ସମ୍ପୂର୍ଣ୍ଣ ପୃଥକ୍ । ଯାହାକୁ ଅନ୍ତଃକରଣ କହେ ପରମ ଶତ୍ରୁ, ତାହା ସଙ୍ଗେ ହାସ୍ୟପୂର୍ଣ୍ଣବଦନରେ କରମର୍ଦ୍ଦନ ସହିତ ମିଷ୍ଟାଳାପ ନ କଲେ ସମାଜର ଗତି

ରକ୍ଷା ହୁଏ ନାହିଁ । ଆଜି ସମାଜରେ ପ୍ରଣାମର ସଂଖ୍ୟା ଅତ୍ୟଧିକ ପରିମାଣରେ ବୃଦ୍ଧି ହୋଇଅଛି । ଅଜ ମୁହୂର୍ତ୍ତ ମୁହୂର୍ତ୍ତକେ ନମସ୍କାର, ମୁହୂର୍ତ୍ତ ମୁହୂର୍ତ୍ତକେ କରମର୍ଦ୍ଦନ । ମାତ୍ର ସେଗୁଡ଼ିକ ସବୁ କୃତ୍ରିମ । ତୁମେ ଯେଉଁ ପ୍ରେମ ଓ ପ୍ରଣୟର କଥା କହୁଛ, ସେ ପ୍ରେମ ଅକୃତ୍ରିମ, ସେ ପ୍ରଣୟ ଅମୂଲ୍ୟ । ସେ ପ୍ରେମ ସମାଜରେ ନାହିଁ । ସମାଜରେ ଯେଉଁ ପ୍ରେମ ଓ ପ୍ରଣୟ ଅଛି, ଶିକ୍ଷିତ ଯୁବକମାନେ ତାହାର ମୂଲ୍ୟ ନିରୂପଣ କରି ଦ୍ୱାରେ ଦ୍ୱାରେ କ୍ରୟବିକ୍ରୟର ବ୍ୟବସ୍ଥା କଲେଣି ! ସେ ପ୍ରେମ ଏ ପ୍ରେମ ସମ୍ପୂର୍ଣ୍ଣ ପୃଥକ୍ ।

ଗୀତ ।

ସେ ପ୍ରେମ ସମାଜେ ନାହିଁ ।
ଯେ ପ୍ରେମ କାହାଣୀ କହିଲ ସଜନ,
ସେ ପ୍ରେମ ଗଲାଣି କାହିଁ ।
ସେ ପ୍ରଣୟଧନ ହେଲାଣି ସ୍ୱପନ
ମୁଣୁହିଁ ଜଗତେ ନାହିଁ ।
କଣା କଡ଼ା ଧନ ସମାଜ ପ୍ରଣୟ
ତହିଁରେ ତା ଜ୍ୟୋତି କାହିଁ ।
ସେ ପ୍ରେମ ରହିଛି କୀଟ ପତଙ୍ଗରେ
ପଶୁ ପକ୍ଷୀ ତରୁ ଡାଳେ ।
ସେ ପ୍ରେମ ଉଡ଼ଇ ଗଗନେ ପବନେ
ଖେଳଇ ପୟୋଧିଜଳେ ।

( ପଟକ୍ଷେପ । )



# ଚତୁର୍ଥ ଅଭିନୟ ।



## ପ୍ରଥମ ଦୃଶ୍ୟ ।

ରସାନନ୍ଦଙ୍କ କକ୍ଷ ।

( ରସାନନ୍ଦ । )

ରସାନନ୍ଦ--(ସ୍ୱଗତ) କାଳର ବିଚିତ୍ର ଗତି ! ସଂସାର ବଡ଼ ସଙ୍କଟମୟ, ପଦେ ପଦେ ବିପଦ, ପଦେ ପଦେ ପ୍ରତିବନ୍ଧକ, ପ୍ରତି କାର୍ଯ୍ୟରେ ବାଧା, ପ୍ରତି ଉଦ୍ୟମରେ ବିଘ୍ନ, ଭଗବାନଙ୍କର ଯେ କି ଇଚ୍ଛା, ତାହା ବୁଝିବା କଠିନ । ପିତାମାତାଙ୍କର ଆଜ୍ଞା ଲଙ୍ଘନ କରିବି, ମୋଠାରୁ କୁଳନନ୍ଦ ଆଉ ଜଗତରେ କିଏ ଅଛି ? ତେଣେ ସମାଜ ! ସମାଜ ନଷ୍ଟ ହେଉଛି, ଦିନକୁଦିନ ସମାଜ ଅଧୋଗତି ପ୍ରାପ୍ତ ହେଉଛି ! ମୁଁ ସମାଜଦ୍ରୋହୀ ହେବି, ଦେଶଦ୍ରୋହୀ ହେବି, ଜାତିଦ୍ରୋହୀ ହେବି ! ଏ ବିପଦରେ ମୋର କି କର୍ତ୍ତବ୍ୟ ? ମୁଁ କି ଉପାୟରେ ଏହି ବିପଦରୁ ରକ୍ଷା ପାଇବି ? ହେ କରୁଣାନିଧାନ ! ହେ ବିଶ୍ୱନିୟନ୍ତା ପରମେଶ୍ୱର ! ମୋର ବୁଦ୍ଧିଲୋପ ହୋଇ ଗଲାଣି, ମୁଁ ଜ୍ଞାନଶୂନ୍ୟ ହୋଇ ଗଲଣି, ମତେ ଏ ବିପଦରୁ ଉଦ୍ଧାର କର ।

(ବୃନ୍ଦାବନର ପ୍ରବେଶ ।)

ବୃନ୍ଦା—କି ଭାଇ ରସାନନ୍ଦ ! ତୁମର ଯେ ଆଉ ଦର୍ଶନ ମିଳିବା କଠିନ ହେଲା; କଥାଟା କଣ ?

ରଧା—ଆଉ ଭାଇ ଆଉ ବସ, କେଇଦିନ ହେଲା ଆଉ ଯାଇ ପାରୁ ନାହିଁ ।

(ଉଭୟଙ୍କର ଚୌକିରେ ଉପବେଶନ ।)

ବୃନ୍ଦା—ବଡ଼ ଆଶ୍ଚର୍ଯ୍ୟ କଥା, ଏଥି ମଧ୍ୟରେ ସମିତିର ଦୁଇଥର ମିଟିଂ ହୋଇଗଲା, ତୁମର ଦେଖା ନାହିଁ ! ତୁମେ ଅନୁପସ୍ଥିତ ହେବ, ଏ କଥା କେହି କେବେ ସ୍ୱପ୍ନରେ ମଧ୍ୟ ଭାବି ନ ଥିଲେ । ବୁଲିବାକୁ ମଧ୍ୟ ବାହାରୁ ନାହିଁ, ତୁମର ହେଲା କଣ ?

ରପା—ନାହିଁ, କିଛି ହୋଇ ନାହିଁ, ତେବେ—

ବୃନ୍ଦା—ତେବେ ଆଉ କଣ ? ଆମ୍ଭେମାନେ ଶୁଣିଛୁଁ ଯେ, ବିବାହ ହେଲା ପରେ ଲୋକମାନଙ୍କର ମନର ଗୋଟାଏ ଭାରି ପରିବର୍ତ୍ତନ ଘଟେ; ବିଶ୍ୱାସ କରୁଁ, ସେପରି ଘଟିବା ଖୁବ୍ ସମ୍ଭବ । କାରଣ ଜୀବନର ଯେତେବେଳେ ପରିବର୍ତ୍ତନ ହୁଏ, ମନର ପରିବର୍ତ୍ତନ ଅବଶ୍ୟ ହେଉଥିବ । ରୂପବତୀ ସ୍ତ୍ରୀରତ୍ନ ଲାଭ କରି ମନୁଷ୍ୟମାତ୍ର ମୁଗ୍ଧ ହେବା କିଛି ଅସମ୍ଭବ ନୁହେ । କିନ୍ତୁ ବିବାହ ପୂର୍ବରୁ ତୁମର ଏପରି ଦଶା ହେଲା କାହିଁକି ?

ରପା—ଭାଇ ବୃନ୍ଦାବନ ! ତୁମେ ମୋର ବନ୍ଧୁ, ହୃଦୟର ବନ୍ଧୁ, ତୁମଠାରେ ମୋର କୌଣସି କଥା ଗୋପନ ନାହିଁ । ମୁଁ ସ୍ତ୍ରୀରତ୍ନ ପାଇବା ଆଶାରେ ମୁଗ୍ଧ ହୋଇ ନାହିଁ, ମୋର ହୃଦୟର କଥା କହିବି; ଆଉ ତୁମ୍ଭମାନଙ୍କୁ ମୁହଁ ଦେଖାଇବାକୁ ମୋର ମୁହଁ ଅଛି କି ? ମୋ ମନରେ

ଯେ କି କଷ୍ଟ ହେଉଛି, ତାହା ମୋ ମନ ଜାଣେ । ମୁଁ ଆଉ ତୁମ୍ଭମାନଙ୍କର ବନ୍ଧୁ ନୁହେ, ମୁଁ ବନ୍ଧୁର ଯୋଗ୍ୟ ନୁହେ; ମୁଁ ତୁମ୍ଭମାନଙ୍କର ପରମ ଶତ୍ରୁ, ସଂସାରରେ ମୋର ବାଞ୍ଛନୀୟ ପଦାର୍ଥ କେବଳ ମୃତ୍ୟୁ, ମୋର ଅନ୍ୟ ଗତି କିଛି ନାହିଁ ।

ବୃନ୍ଦା--ଭାଇ ରସାନନ୍ଦ ! ଛି, ଏପରି ଆକୁଳ ହେବା ଉଚିତ ନୁହେ । ଆସ ବୁଲି ଯିବା, ଦୁଇଟା କଥାବାର୍ତ୍ତା କହିଲେ ମନର ଶାନ୍ତି ହେବ ।

ରସା—ଭାଇ ରେ ! ଆଉ ଶାନ୍ତିର କଥା ମତେ କହ ନା । ମୋ ଜୀବନରେ ଆଉ ଶାନ୍ତିର ଆଶା ନାହିଁ । ସମିତିରୁ ମୋର ନାମ କାଟି ଦିଅ, ସମିତିରେ ମୋର ନାମ ରହିଲେ ସମିତିର ଅପମାନ ହେବ । କାଲି ସମିତିରେ ତୁଚ୍ଛା ହୋଇ ଛାତି ଫୁଲାଇ ହୋ ହୋ କରି କେତେ ଚିତ୍କାର କରି ଆସିଲି, ଆଜି ନିଜେ ତହିଁର ବିପରୀତ କାର୍ଯ୍ୟ କରିବି ! ଯେତେ ପ୍ରକାରେ ଅନୁରୋଧ କଲି, ପିତାମାତା ଆଦୌ ଶୁଣିବାକୁ ନାହାନ୍ତି, ବରଂ ଅସନ୍ତୁଷ୍ଟ ହେଉଅଛନ୍ତି, କହନ୍ତି, ଦୁଇପଦ ଇଂରାଜୀ ପଢି ଆମ୍ଭ ଉପରେ ମୁରବିଗିରି କରିବାକୁ ବସିଲୁଣି । ଏଣେ ପିତା ମାତା, ପିତାମାତାଙ୍କ ସ୍ନେହ ଓ ଯତ୍ନରେ ମନୁଷ୍ୟ ହେଲି, ସେମାନଙ୍କୁ ଅସନ୍ତୁଷ୍ଟ କରିବି; ସେମାନଙ୍କର ଅବାଧ୍ୟ ହେବି; ତେଣେ ଦେଶ, ସମାଜ, ଜାତି; ଜାତିଟା ଛାର-ଖାର ହେଉଛି, ସମାଜ ଧ୍ୱଂସ ହେଉଛି ! ମୁଁ ପାପିଷ୍ଠ

ଅଧମ ତହିଁରେ ଗୋଟିଏ ଉଦାହରଣ ହେବ ! ମୃତ୍ୟୁ ଭିନ୍ନ ଏ ସଙ୍କଟରୁ ଉଦ୍ଧାର ହେବାର ଆଉ କି ଉପାୟ ଅଛି ?

ବୃନ୍ଦା—ଭାଇ ରସାନନ୍ଦ ! ତୁମ୍ଭର ମନର ଅବସ୍ଥା ମୁଁ ଉତ୍ତମ-ରୂପେ ବୁଝି ପାରୁଛି । ଆମ୍ଭେମାନେ ମଧ୍ୟ ସମିତିପକ୍ଷରୁ ଏଥି ମଧ୍ୟରେ ତୁମ୍ଭ ପିତାଙ୍କ ସହିତ ଅନେକବାର ସାକ୍ଷାତ କଲୁଣି, ଅନେକ ଚେଷ୍ଟା କଲୁଣି, ତାଙ୍କୁ କୌଣସି ପ୍ରକାରେ ବୁଝାଇ ପାରିଲୁଁ ନାହିଁ । ତୁମ୍ଭେ ଏପରି ବ୍ୟସ୍ତ ହେଲେ ଫଳ ହେବ ନାହିଁ, ତୁମ୍ଭର ହୃଦୟ ଅତି ମହତ୍ ଓ ଅତି ସତ୍ ।

ରସା--ହୃଦୟର ମହତ୍ପଣିଆ ଓ ସତ୍ପଣିଆ ସବୁ ହକ ଗଲୁଣି ।

ବୃନ୍ଦା--କହ ନା, କହ ନା, ଧୈର୍ଯ୍ୟ ଧର, ଭଗବାନ୍ ଅଛନ୍ତି, ଭଗବାନ୍ ଆମ୍ଭମାନଙ୍କର ସହାୟ ହେବେ । ଆମ୍ଭମାନଙ୍କ ହୃଦୟ ଯେବେ ସତ୍ ଥିବ, ତେବେ ଭଗବାନ୍ ନିଶ୍ଚୟ ଆମ୍ଭମାନଙ୍କର ସଦ୍‌ଗତିର ବିଧାନ କରିବେ । ତୁମ୍ଭେ ଲୁଚି ରହିଲେ କାର୍ଯ୍ୟ ଚଳିବ ନାହିଁ । ମନ ଅଧିକ ଆକୁଳ ହେବ । ଆମ୍ଭେମାନେ ସମସ୍ତେ ଉପାୟର ଚିନ୍ତା କରୁଛୁଁ । ତୁମ୍ଭେ ଆସ, ସମସ୍ତେ ପରାମର୍ଶ କରିବା, ଭଗବାନ୍ ଅବଶ୍ୟ ଆମ୍ଭମାନଙ୍କ କାମନା ସିଦ୍ଧ କରିବେ ।

(ଉଭୟଙ୍କର ପ୍ରସ୍ଥାନ ।)



## ଦ୍ୱିତୀୟ ଦୃଶ୍ୟ ।

### ଚଉଧୁରୀଙ୍କ ଚଉପାଢ଼ୀ ।

(ଚଉଧୁରୀ ଓ ଜଣେ ଗୁମାସ୍ତା ।)

ଚଉ—( ସ୍ୱଗତ ) ବିଚାରପତି ଘୋର ଅବିବେଚକ ! ବିଚାରପତିଙ୍କର ଆଦୌ ବିବେଚନା ଶକ୍ତି ନାହିଁ । ଆଇନଗୁଡ଼ାକ କେବଳ ବେଆଇନ୍ ! ଆଇନ୍ କାନୁନ୍ ସବୁ ଭୁଲ ! ଏତେ ଯତ୍ନ ଏତେ କୌଶଳ କରି ଅର୍ଥ ସଂଗ୍ରହ କଲି, ଭାଇମାନେ ଆମର ଖାଇ ଆମର ପିଇ ଆମଠାରୁ ଅଂଶ ପାଇବେ ! ଏପରି ବିଧାନ ଯେଉଁ ଆଇନରେ ଅଛି, ସେ ଆଇନ ପୋଡି ଯାଉ ! (ଗୁମାସ୍ତା ପ୍ରତି) ଗୁମାସ୍ତା ! ଓକିଲଙ୍କୁ ପଚାରି ଶୀଘ୍ର ଅପିଲ ଦାଏର କର ।

ଗୁମା—ଓକିଲଙ୍କୁ ପଚାରିଥିଲି, କହିଲେ ଅପିଲ କର । ଏ ହାକିମ କିଛି ନୁହନ୍ତି, ଆଦୌ ମକଦ୍ଦମାର ଭିତରେ ପ୍ରବେଶ କରି ପାରିଲେ ନାହିଁ ।

ଚଉ—ଅପିଲରେ ଫଳ ହେବ ?

ଗୁମା—କହୁଥିଲେ, ଭଲ ଓକିଲ ବାରିଷ୍ଟର ଦେଲେ ଫଳ ହୋଇ ପାରିବ ।

ଚଉ—(ସ୍ୱଗତ) ହେ ଜଗଦୀଶ୍ୱର ! ଏ ଦୁନିଆରେ ଏହି ବିଚାର ! ମୁଁ କେବଳ ପାପର ଭାଗୀ ହେଲି, ଫଳଭୋଗୀ ହେଲେ ଅନ୍ୟ ବ୍ୟକ୍ତି । ଗୁମାସ୍ତା ! କଲିକତାରୁ ଉଇଲ ମକଦ୍ଦମାର ଅପିଲର ସମ୍ବାଦ କିଛି ଆସେ ନାହିଁ ?

ଗୁମା—ଅଜ୍ଞା କହୁ ଅସି ନାହିଁ ।

ଚୈତ—ଯେତେବେଳେ କର୍ମ ଖରାପ ହୁଏ, ତେତେବେଳେ ସବୁ ଦୁର୍ଯୋଗ ଏକାବେଳକେ ଘଟେ । ବିପଦ କେବେ ଗୋଟି ଗୋଟି ହୋଇ ଅସେ ନାହିଁ । କିଏ ଭାବିଥିଲା ଯେ, ଏଠାରେ ଉଇଲ ଜାଲ ବୋଲି ସାବ୍ୟସ୍ତ ହେବ ? କିଏ ଜାଣିଥିଲା ଯେ, ଭାଇମାନେ ଅଂଶ ପ୍ରାପ୍ତ ହେବେ ? କିଏ କେବେ ମନେ କରିଥିଲା ଯେ, ସଦାନନ୍ଦଙ୍କୁ ପୋଲିସ ଗିରଫ୍ଦାର କରିବ ? ଅକାରଣରେ ଚାରି ପାଞ୍ଚ ହଜାର ଟଙ୍କା ଖରଚ ହୋଇଗଲା, ଜାମିନ କରାଇ ପାରିଲି ନାହିଁ । ମକଦ୍ଦମା ବିଚାର ହେଲେ କଣ ହେବ, କହି ହେଉ ନାହିଁ ।

(ଅନ୍ୟ ଏକ ଜଣ ଗୁମାସ୍ତା ମାଧବର ପ୍ରବେଶ ଓ ଅଭିବାଦନ ।)

ଚଉ—କି ମାଧବ ! ଅପିଲ ଖବର କଣ ?

ମାଧ—ଅପିଲ ଗ୍ରହଣ କାଲି ବାହାରି ନାହିଁ, ଅଜ ବାହାରିଲେ ବଡ଼ ଗୁମାସ୍ତା ତାର କରିବେ । ଅଣା ଭଲ ନୁହେଁ । ସେଠାରେ ସାନ ବାବୁ ବଡ଼ ବିପଦରେ ପଡ଼ିଛନ୍ତି । ବଡ଼ ଗୁମାସ୍ତା ମତେ ଜରୁରି ପଠାଇ ଦେଲେ ।

ଚଉ—କଣ ! କଣ ! କି ବିପଦ ?

ମାଧ—ସାନ ବାବୁ ଏଠାରୁ ଯେଉଁ ସ୍ତ୍ରୀଲୋକଟା ସଙ୍ଗରେ ଚାଲି ଯାଇଥିଲେ, ସେ ସ୍ତ୍ରୀଲୋକ କଲିକତାରେ ସାନ ବାବୁଙ୍କ ଛାଡ଼ି ଅନ୍ୟ ଏକ ବାବୁ ସହିତ ଚାଲିଗଲା । ସାନ ବାବୁ

କଣ୍ଟକେରେ ଗୁଣ୍ଡା ନେଇ ସେହି ବାବୁର ଘରେ ପଶି ରାତି ଦୁଇଟାବେଳେ ଦଙ୍ଗା ହଙ୍ଗାମ କଲେ । ସେଥିରେ ଦୁଇ ଜଣ ଖୁନ୍ ହୋଇଛନ୍ତି । ଘାନ ବାବୁଙ୍କର ମୁଣ୍ଡ ଫାଟି ଯାଇଛି । ପୋଲିସ ଘାନ ବାବୁଙ୍କୁ ହଂସପାତାଳକୁ ପଠାଇଛି । ଘାନ ବାବୁ ହଂସପାତାଳରେ ଅଛନ୍ତି । ମତେ ଆଜ ତିନ ହଜାର ଟଙ୍କା ନେଇ ଫେରି ଯିବାକୁ ହେବ । ବଡ଼ ଗୁମାସ୍ତା କାହା କାହା ସହିତ ବନ୍ଦୋବସ୍ତ କରିଛନ୍ତି । ତେଣୁ ମତେ ଶୀଘ୍ର ପଠାଇଦେଲେ ।

ଚନ୍ଦ୍ର—ଏ କେଉଁ ଦିନର ଘଟଣା ? ଘାନ ବାବୁ ଅଛନ୍ତି କିପରି ?

ମାଧ—ଏ ଗତ ସୋମବାର ରାତିର ଘଟଣା । ଆମ୍ଭେମାନେ କାଲି ଖବର ପାଇଲୁଁ । ଅବସ୍ଥା ଭଲ ନୁହେ ।

ଚନ୍ଦ୍ର—(ସ୍ୱଗତ) ହା ବିଧାତା ରେ ! ମୋର ବର୍ତ୍ତମାନ ମୃତ୍ୟୁ ଭିନ୍ନ ଆଉ କୌଣସି ବିଷୟରେ ଆଶା ନାହିଁ । ସଂସାରର ଖେଳ ଯଥେଷ୍ଟ ଖେଳିଛି । ସଂସାରରେ ଅର୍ଥର ମର୍ଯ୍ୟାଦା ସର୍ବାପେକ୍ଷା ଅଧିକ, ଏହି ଧାରଣାରେ ପାପ ପୁଣ୍ୟକୁ ଆଦୌ ଲକ୍ଷ୍ୟ ନ କରି ଏ ଜୀବନରେ ଯଥେଷ୍ଟ ଅର୍ଥ ସଂଗ୍ରହ କରିଛି । ପ୍ରାଣପଣେ ଅର୍ଥର ଉପାସନା କରିଛି । ଆଜ ସେହି ଅର୍ଥଦେବତା ମୋଠାରେ ଅପ୍ରସନ୍ନ । ଅର୍ଥ-ଦେବତା ମୋତେ ପରିତ୍ୟାଗ କରିବାକୁ ଉଦ୍ୟତ । ମୁଁ ଜ୍ଞାନକ୍ରମେ କଡ଼ା କ୍ରାନ୍ତି କେବେ ଉପଭୋଗ ଅର୍ଥରେ ଅପବ୍ୟୟ କରି ନାହିଁ । କେବଳ ଅର୍ଥସଞ୍ଚୟ ମୋର ବ୍ରତ

ଥିଲା । ସନ୍ତାନ୍ୟରେ ମୋର ସୁଖ, ସନ୍ତାନ୍ୟରେ ମୋର ତୃପ୍ତି, ସନ୍ତାନ୍ୟରେ ମୋର ଶାନ୍ତି । ଏବେ ହଜାର ହଜାର କଣ୍ଟ ଅତଳ ଜଳଧିଗର୍ଭରେ ନିକ୍ଷେପ କରିବାକୁ ପଡ଼ିଲା । ଜ୍ୟେଷ୍ଠ ପୁତ୍ର ଅତି ଗୁଣବାନ୍ ବୋଲି ଅବଶେଷରେ କଣା ଦୋଷରେ କାରାବାସ ଭୋଗ କଲେ । ଦ୍ୱିତୀୟ ପୁତ୍ର ଅପ୍ରାପ୍ତବୟସ୍କରୁ ବେଶ୍ୟାସକ୍ତ । ସେହି ବେଶ୍ୟାଦୋଷରେ ବର୍ତ୍ତମାନ ଏ ଦଶା । ମୋର ଅଜ୍ଞାତରେ ପୁତ୍ରମାନେ ଯେ କେତେ ଅର୍ଥ ଅପବ୍ୟୟ କରିଅଛନ୍ତି, ତାହା ଅଦ୍ୟାପି ବୁଝି ପାରିଲି ନାହିଁ । ବର୍ତ୍ତମାନ ପୁଣି ନିଜ ହାତରେ ହଜାର ହଜାର ଗଣିବାକୁ ପଡ଼ିଲା । ହା ଅଦୃଷ୍ଟ ! ଏ କଥା କାହାକୁ କହିବି ! ଜୀବନର ସର୍ବପ୍ରକାର ବାସନାକୁ ବିସର୍ଜନ କରି ଅର୍ଥ ସଞ୍ଚୟ କଲି, ଭାଇମାନେ ବସି ବସି ନେଲେ ବାରପଣ, ମୋହର ଅଂଶ ପଡ଼ିଲା ତେରପଣ । ଯାହା ପାଇଲି, ତାହା ମଧ୍ୟ ଏହିପରି ନଷ୍ଟ ହେବାକୁ ବସିଲା । ମୋର ଆଉ ଜୀବନରେ ପ୍ରୟୋଜନ କଣ ? ପୁଣି ଜୁଇଲ ମକଦମାରେ ଅପିଲ ନିଷ୍ପତ୍ତି ହେଲେ ମୋର କ ଗତି ହେବ, ତାହା କହି ହେଉ ନାହିଁ । ଜୁଇଲ ସମ୍ପତ୍ତି ସମସ୍ତ ପରହସ୍ତଗତ ହେବ । ହେ ଭଗବାନ୍ ! ହେ କୃପାମୟ ! ମୋର ପାପର ପ୍ରାୟଶ୍ଚିତ୍ତ ଯଥେଷ୍ଟ ହେଲଣି । ଏବେ ମତେ ଇହସଂସାରରୁ ମୁକ୍ତ କର, ମୋର ଏତିକିମାତ୍ର ଭିକ୍ଷା ।

ମାଧ—ଆଜ୍ଞା ମତେ ଶୀଘ୍ର ବିଦାୟ ଦିଅନ୍ତୁ । ମୁଁ ଏହି ଗାଡ଼ିରେ ବାହାରି ନ ଗଲେ କୌଣସି କାର୍ଯ୍ୟକୁ ପାଇବି ନାହିଁ ।

ଚନ୍ଦ୍ର—ନଦୀ ଶୈଳାଶ୍ରମ ପରିତ୍ୟାଗ କରି ସମୁଦ୍ର ଯାତ୍ରାରେ ଉଦ୍ୟତା ହେଲେ ତାହାର ଗତିରୋଧ କରିବାର ଯେପରି କାହାରି ଶକ୍ତି ନ ଥାଏ, ସେହିପରି ଅର୍ଥ ଅପବ୍ୟୟରୂପ ଖରସ୍ରୋତରେ ପରିଣତ ହେଲେ ତାହାର ଗତିରୋଧ କରିବାର କିଞ୍ଚିନ୍ମାତ୍ର ଉପାୟ ନାହିଁ । ବର୍ତ୍ତମାନ ତିନି ହଜାର କହ, ପାଞ୍ଚ ହଜାର କହ, ବା ଦଶ ହଜାର କହ, ଏକ କପର୍ଦ୍ଦକ ସୁଦ୍ଧା କମ କରିବାର ମୋର ଅଧିକାର ନାହିଁ । କିନ୍ତୁ ଦୁଃଖର ବିଷୟ, ମୋର ଏହି ହସ୍ତ—ଯେ କି ଚିରଦିନ ସଞ୍ଚୟଶୀଳ—ବର୍ତ୍ତମାନ ତାହାକୁ ତାହାର ସ୍ୱାଭାବିକ ପ୍ରକୃତି ପରିବର୍ତ୍ତନ କରିବାକୁ ପଡ଼ୁଛି ! ହଉ ଆସ, ଟଙ୍କା ନେଇ ଶୀଘ୍ର ବାହାରି ଯାଅ । ଅଫିସ ଘରୁ ବାହାରିଲେ ଖବର ଦେବ ।

( ଉଭୟଙ୍କର ପ୍ରସ୍ଥାନ । )



ତୃତୀୟ ଦୃଶ୍ୟ ।

ତରଙ୍ଗିଣୀର କକ୍ଷ ।

( ତରଙ୍ଗିଣୀର ପ୍ରବେଶ )

ତର—ପାଇଲଣି, ପାଇଲଣି, ବିଷ ପାଇଲଣି, ମୁଁ ବିଷ ପାଇଲଣି ! ବିଷ ! ଏହି ବିଷ ! ବିଷ ଜଗତରେ ସାର ପଦାର୍ଥ ! ବିଷ ! ଜଗତ୍ ବିଷମୟ ! ବିଷମୟ ମାତାପିତାଙ୍କ

ସ୍ନେହ ! ବିଷମୟ କୃତ୍ରିମ ବନ୍ଧୁତା ! ଅର୍ଥ ! ଅର୍ଥ ବିଷ ! ଅର୍ଥ ବିଷପୂରିତ ମୋଦକ ! ପର ଅର୍ଥ କାଳକୂଟ ବିଷ ! ପର ଅର୍ଥରେ ଲୋଭ କର ନା, ନଷ୍ଟ ହେବ ! ହୀନଗଣ ହେବ ! ଅନୁତପ୍ତ ହେବ ! ବିଷ ଖାଅ ! ବିଷ ଖାଅ ! ମୁକ୍ତି ଲାଭ କରିବ ! ବିଷର ଜ୍ୱାଳା ନିବୃତ୍ତ ହେବ ! ବିଷର ମହୌଷଧ ବିଷ ! ପିତା ମୋର ବିଷ ଖୁଆଇଛନ୍ତି ! ପିତା ବିଷ ଖାଇଛନ୍ତି ! ପିତାଙ୍କର ବିଷଯନ୍ତ୍ରଣା ହେଉଛି ! ପିତା ବିଷର ଜ୍ୱାଳାରେ ଜର୍ଜରିତ ! ପିତାଙ୍କର ଔଷଧ ଏହି ବିଷ ! ଏହି ବିଷ ଛଡ଼ା ପିତାଙ୍କର ମୁକ୍ତି ନାହିଁ ! ଯାଏଁ, ପିତାଙ୍କୁ ଯାଚିବ, ପିତାଙ୍କୁ କହିବ—ବିଷ ଖାଅ, ବିଷ ନ ଖାଇଲେ ରୋଗର ଶାନ୍ତି ହେବ ନାହିଁ । ମୁଁ ବିଷ ଖାଇବି ! ପିତା ! ମୋହର ପିତା ! ମୋହର ଜନ୍ମଦାତା ! ତାଙ୍କୁ ରୋଗଗ୍ରସ୍ତ ଛାଡି ମୁଁ ବିଷ ଖାଇବି ନାହିଁ ! ସେ ଆଗେ ବିଷ ଖାଉନ୍ତୁ, ତାଙ୍କର ବିଷଜ୍ୱାଳା ନିବୃତ୍ତ ହେଉ ! ମୁଁ ବିଷ ଖାଇବି ! ବିଷମୟ ସଂସାରରୁ ମୁକ୍ତିଲାଭ କରିବି । ଯାଏଁ, ପିତାଙ୍କୁ ଦେଖେଁ ।

( ପ୍ରଜ୍ଞାବୋଦୟମ, ଚମ୍ପାର ପ୍ରବେଶ । )

ଚମ୍ପା—ଫେର ଏମିତି ବକୁଛ ? ମୁଁ ଆଉ ପାରିବି ନାହିଁ ।

ଚିର—କି ଏ, ଚମ୍ପା ! ଟିକିଏ ବିଷ ଖା, ତୋର ସଂସାର ବିଷମୟ ହୋଇଛି, ତୁ ବଡ଼ ଯନ୍ତ୍ରଣା ଭୋଗୁଛୁ, ମୋର ବଡ଼ ଦୁଃଖ ହେଉଛି, ତୁ ଟିକିଏ ବିଷ ଖା, ତୋର ଶାନ୍ତି ହେବ ।

ଚମ୍ପା—ହିଁ, ମୁଁ ବିଷ ଖାଇବି, ମୋର କିଏ ଅଛି ? ମୁଁ ଟିକିଏ ବିଷ ଖାଇଲେ ଏ ଜାଳାରୁ ଉଦ୍ଧାର ପାଇଯାନ୍ତି ।

( ଚରଣିଙ୍କୁ ଧାରଣ । )

ଚର—ହିଁ, ବିଷ ଟିକିଏ ଖା ।

( ଦୁହିଙ୍କର ପ୍ରସ୍ଥାନ । )



ଚତୁର୍ଥ ଦୃଶ୍ୟ ।

ଶ୍ରୀରାମ ସାମନ୍ତରାୟଙ୍କ ଗୃହ ।

(ଶ୍ରୀରାମ ସାମନ୍ତରାୟ ଏବଂ ରଖାଲ ବାବୁ)

ଶ୍ରୀରାମ—ମାଫ୍ କରିବେ, ଆପଣଙ୍କୁ ବହୁତ କଷ୍ଟ ଦେଲି ।

ରଖା—କିଛି ନା, କିଛି ନା, ଆପଣଙ୍କର ମାମଲା ଡିକ୍ରୀ ହେଲା । ହାଇକୋର୍ଟରେ ରାୟ ବାହେଲ ହେଲା । ବଡ଼ ଆନନ୍ଦର ବିଷୟ । ଫେର କି ମକଦ୍ଦମା ଆରମ୍ଭ ହେଲାଣି, ଶୁଣିଲି ?

ଶ୍ରୀରାମ—ସେଇଟା—ଉଇଲ ଜାଲ କରିଥିବାରୁ ଫଉଜଦାରିରେ ଜାଲ ମକଦ୍ଦମା ଚାଲିଛି ।

ରଖା—ସେ ତ ଆପଣଙ୍କର ଡିକ୍ରୀ ହୋଇ ରହିଛି ।

ଶ୍ରୀରାମ—ଆପଣଙ୍କୁ ଡାକିଥିଲି, ଗୋଟାଏ ବିଶେଷ ଦରକାର ଅଛି । କେତେକ ଜଣ ଭଦ୍ରଲୋକଙ୍କୁ ନିମନ୍ତ୍ରଣ କରିବାକୁ

ଇଚ୍ଛା କରୁଛ; ଆମର ଓଡ଼ିଆ ଓ ବଙ୍ଗାଳି ଭାଇଙ୍କ ସକାଶେ ମୁଁ ଗୋଟାଏ ବରାଦ କଲଣି, କେବଳ ସାହେବ-ମାନଙ୍କ ସକାଶେ ବନ୍ଦୋବସ୍ତ କରିବାକୁ ଆପଣ ସାହାଯ୍ୟ ନ କଲେ ହେବ ନାହିଁ ।

ବ୍ରଶା—କଛି ଚନ୍ତା ନାହିଁ, ମୁଁ ପ୍ରସ୍ତୁତ ଅଛି । ଆପଣ ଓଡ଼ିଆ ଓ ବଙ୍ଗାଳୀ ଭାଇଙ୍କ ସକାଶେ କ ବରାଦ କଲେ, ଟିକଏ ଶୁଣେ ?

ଶ୍ରୀରାମ—ସେମାନେ ନାନା ଜାତିର ନାନା ସମ୍ପ୍ରଦାୟର ଲୋକ, ତେଣୁ ସେମାନଙ୍କ ସକାଶେ ପୁରୁଷୋତ୍ତମରୁ ମହାପ୍ରସାଦ ଅଣାଇବାର ବନ୍ଦୋବସ୍ତ କରୁଛ ।

ବ୍ରଶା—ଆପଣ ଭାରି ଭୁଲ କରୁଛନ୍ତି, ଭାରି ଭୁଲ କରୁଛନ୍ତି । ବୋଧହୁଏ, ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ମହାପ୍ରସାଦର କିଛି କିଛି ମର୍ଯ୍ୟାଦା ଥିବାର ଶୁଣା ଅଛି । ସେତେବେଳେ ବୋଧହୁଏ ଲୋକେ ମହାପ୍ରସାଦକୁ ଆଗ୍ରହର ସହିତ ଗ୍ରହଣ କରୁଥିଲେ । ମାତ୍ର ସମାଜ କ୍ରମେ କ୍ରମେ ଉନ୍ନତି-ମାର୍ଗରେ ଅଗ୍ରସର ହେଉଅଛି । ଲୋକମାନଙ୍କର ରୀତି ନୀତି, ଆହାର ବ୍ୟବହାର ଏବଂ ରୁଚିର ପରିବର୍ତ୍ତନ ହେଉଅଛି । ଊନବିଂଶ ଶତାବ୍ଦୀରେ ପଲାଉ, ଲୁଚି, ମାଂସର ଝୋଳ ପ୍ରଭୃତି ନିମନ୍ତ୍ରଣ ସମୟରେ ପ୍ରାଧାନ୍ୟ ଲାଭ କରିଥିଲା; ମାତ୍ର ବର୍ତ୍ତମାନ ସେ ରୁଚି ମଧ୍ୟ ବଦଳି ଗଲାଣି । ଆପଣ ସାହେବମାନଙ୍କ ସକାଶେ ପୃଥକ୍ ଏବଂ ଓଡ଼ିଆ ଓ ବଙ୍ଗାଳୀଙ୍କ ସକାଶେ ପୃଥକ୍ ବନ୍ଦୋବସ୍ତ

କରିବାର କୌଣସି ପ୍ରୟୋଜନ ନାହିଁ । ସମସ୍ତଙ୍କ ସକାଶେ ଏକ ବନ୍ଦୋବସ୍ତ କରନ୍ତୁ । ଅଭୁ ଯଦୁ ପଣ୍ଡା, ଶ୍ୟାମ ଭଦ୍ରାଡ଼ୀ, ଶ୍ୟାମ ମିଶ୍ରମାନଙ୍କ ପାକପ୍ରଣାଳୀରେ କେହି ସନ୍ତୁଷ୍ଟ ହେବେ ନାହିଁ । ଆପଣଙ୍କୁ କରିମ୍ ମିଶ୍ର, ଅବ୍ଦୁଲ୍ ଭଦ୍ରାଡ଼ୀ ଓ ଖଇରାତି ପାଣ୍ଡେଙ୍କର ଆଶ୍ରୟ ନେଇବାକୁ ହେବ । ଖାଦ୍ୟ ସାମଗ୍ରୀ ମଧ୍ୟରେ କାରି, କଟ୍‌ଲେଟ୍, ଚପ୍ ପ୍ରଭୃତି ପ୍ରସ୍ତୁତ କରିବାକୁ ହେବ । ଥୋଡ଼ା ସେରି, ସେମ୍ପିନ୍ ଓ ହୁଇସ୍କି ମଧ୍ୟ ରଖିବା ଦରକାର । ସାହେବମାନଙ୍କ ଭୋଜନାନ୍ତେ ଖାଦ୍ୟ ସାମଗ୍ରୀଗୁଡିକ ମହାପ୍ରସାଦର ବାବାର ଗୁଣ ଧାରଣ କରିବ । ନାନା ବର୍ଣ୍ଣ ନାନା ଜାତି ହେଲେ ସୁଦ୍ଧା କେହି ଏକତ୍ର ଭୋଜନ ପକ୍ଷେ ଆପତ୍ତି କରିବେ ନାହିଁ । ଆପଣ ସେଥି ନିମନ୍ତେ ଚିନ୍ତିତ ହେବେ ନାହିଁ । ସମୟ ଓ ରୁଚିର ପରିବର୍ତ୍ତନ ପ୍ରତି ଲକ୍ଷ୍ୟ ରଖି ଖାଦ୍ୟ ପଦାର୍ଥର ବ୍ୟବସ୍ଥା କରିବା କର୍ତ୍ତବ୍ୟ । ପୂର୍ବେ ଲୋକେ ଭୂମିରେ ଆସନ ବିସ୍ତାର କରି କଦଳୀ ପତ୍ରରେ କେବଳ ଦକ୍ଷିଣହସ୍ତ ଦ୍ୱାରା ଭୋଜନ କରୁଥିଲେ, ବର୍ତ୍ତମାନ ଦଣ୍ଡାୟମାନ ହୋଇ ବାମ ଦକ୍ଷିଣ ଦୁଇ ହସ୍ତ-ଦ୍ୱାରା ଭୋଜନ କରିବାକୁ ହୁଏ । କିଛି କାଳ ପରେ ବୋଧହୁଏ ଖାଦ୍ୟପଦାର୍ଥ ସବୁ ଉଚ୍ଚ ସ୍ଥାନରେ ଝୁଲାଇ ରଖିବାକୁ ହେବ ଏବଂ ଶିକ୍ଷିତ ବ୍ୟକ୍ତିମାନେ ହସ୍ତ ପଦର ବିନା ସାହାଯ୍ୟରେ କେବଳ ମୁଖଦ୍ୱାରା ଭୋଜନ କାର୍ଯ୍ୟ ନିର୍ବାହ କରିବେ ।

ଶ୍ରୀରାମ—ତେବେ ଏ ସବୁ ବିଷୟରେ ଆପଣଙ୍କ ଉପରେ ସମ୍ପୂର୍ଣ୍ଣ ଭାର ରହିଲା, ମୁଁ କେବଳ ଖର୍ଚ୍ଚ ଯୋଗାଇବ ।

ବିଶା—କିଛି ଚିନ୍ତା ନାହିଁ, ମୁଁ ପ୍ରସ୍ତୁତ ଅଛି । ସଭ୍ୟ ସମାଜର ଉନ୍ନତି ସଙ୍ଗେ ସଙ୍ଗେ ଏ ସବୁ ବିଷୟରେ ବିଶେଷ ସୁବିଧା ହୋଇଅଛି । ପୂର୍ବେ ଦ୍ୱାର ଦ୍ୱାର ହୋଇ ବୁଲି ବୁଲି ପ୍ରତ୍ୟେକ ବ୍ୟକ୍ତିଙ୍କୁ ନିମନ୍ତ୍ରଣ ନ କଲେ କେହି ଆସୁ ନ ଥିଲେ, ବର୍ତ୍ତମାନ ଖଣ୍ଡେ ଲଫାଫାରେ କେବଳ ବାବୁମାନଙ୍କ ନାମ ଲେଖି ଆପଣଙ୍କ ଯୋଡ଼ା ସହିସ ବା ଅତି ନୀଚ କର୍ମରେ ନିଯୁକ୍ତ ଭୃତ୍ୟକୁ ପଠାଇ ଦିଅନ୍ତୁ, କେହି ଆସିବାକୁ କୁଣ୍ଠିତ ହେବେ ନାହିଁ । ପୁଣି ଭୋଜନ କରାଇବାର ସ୍ଥାନ ମଧ୍ୟ ଅଧିକ ପଡ଼ି ପାରନ୍ତା, ମାତ୍ର ବର୍ତ୍ତମାନ ଗୃହ ଛଅ ଫୁଟର ଦୁଇ ଖଣ୍ଡ ଟେବଲ୍ ଉପରେ ଖାଦ୍ୟ ସାମଗ୍ରୀଗୁଡ଼ିକ ଜମା କରି ଦେଉନ୍ତୁ, ଦେଖିବେ, ଖ୍ରୀଷ୍ଟିୟାନ୍, ମୁସଲମାନ୍ ଓ ହିନ୍ଦୁ ମଧ୍ୟରେ ବ୍ରାହ୍ମଣଠାରୁ ଅତି ନିମ୍ନ ଶ୍ରେଣୀର ବ୍ୟକ୍ତି ପର୍ଯ୍ୟନ୍ତ ଏକ ସମୟରେ ଏକତ୍ର ବିନା ଓଜରରେ ଦୁଇ ତିନି ଶତ ଭଦ୍ରବ୍ୟକ୍ତି ଅତି ଆନନ୍ଦରେ ଆହାର କରିବେ । ଏ କି କମ୍ ସୁବିଧା ?

ଶ୍ରୀରାମ—ଯଦି କେହି ଆପତ୍ତି କରନ୍ତି ?

ବିଶାଳ—କେହି ଆପତ୍ତି କରିବେ ନାହିଁ । ଯାହାର ସେପରି ଅଭ୍ୟର ପ୍ରକାଶ ହେବ, ସେ ସଭ୍ୟସମାଜରେ ଅସଭ୍ୟ ପଶୁ ଶ୍ରେଣୀରେ ଗଣ୍ୟ ହେବେ ।

ଶ୍ରୀରାମ—ଏ ସମସ୍ତ ବିଷୟର ଭାର ଆପଣଙ୍କ ଉପରେ । ମତେ ଯାହା ଆଦେଶ ଦେବେ, ମୁଁ ତାହା ପ୍ରସ୍ତୁତ ରଖିବି ।

ସ୍ୱାମୀ—ଆପଣଙ୍କ କଷ୍ଟ କରିବାକୁ ହେବ ନାହିଁ । ମହାପ୍ରସାଦର ଭଣ୍ଡାର କେଲ୍‌ନାର କୋମ୍ପାନୀଙ୍କ ଗୋଦାମ । ଖବର ଦେଲେ ସେ ସମସ୍ତ ପଦାର୍ଥ ଉପଯୁକ୍ତ ସମୟରେ ଯୋଗାଇ ଦେଇଯିବେ । ତାହା ମୁଁ ଯଥାସମୟରେ ବିହିତ କରିବି, ଆପଣଙ୍କର ବ୍ୟସ୍ତ ହେବାର ପ୍ରୟୋଜନ ନାହିଁ । ମୁଁ ବର୍ତ୍ତମାନ ଆସୁଛି ।

ଶ୍ରୀରାମ—ମାଫ କରିବା ହେବେ, ମୁଁ ବହୁତ କଷ୍ଟ ଦେଲି ।

ସ୍ୱାମୀ—କିଛି ନା, କିଛି ନା, ନମସ୍କାର ।

ଶ୍ରୀରାମ—ନମସ୍କାର ।

( ଉଭୟଙ୍କର ଉଭୟ ଦିଗକୁ ପ୍ରସ୍ଥାନ । )



## ପଞ୍ଚମ ଦୃଶ୍ୟ ।

ଉପବନ ।

(ଉପବନର ଏକ ପ୍ରାନ୍ତରେ ବୃକ୍ଷନିର୍ମିତ ଲତା ସୁସଜ୍ଜିତ । କୁନ୍ତଳା ଦଣ୍ଡାୟମାନା )

କୁନ୍ତଳା—                ଗୀତ ।

(ବଡ଼) ଆଦରର ଧନ ଏହୁ ଉପବନ
ଯତନ ନାଗଇ ହୃଦୟେ ମୋହର ।

ପତ୍ର ପୁଷ୍ପ ଫଳ ଯେତେ ଏ ଉଦ୍ୟାନେ,
ଗୋଟି ଗୋଟି ମୁହିଁ ଜନମରୁ ଚିହ୍ନେ,

ଯହିଁ ଲଗାଇଛୁ ମୁହିଁ ବଢ଼ାଇଛୁ,
ତୁମା ପୀଉଛ ଧନ ଏତେକମାତର ।

ମନୁଷ୍ୟ ସମାଜେ ଯହିଁ ଦେଖ ତହିଁ
ସକଳ କୃତ୍ରିମ, ଅକୃତ୍ରିମ ନାହିଁ,
ଅକୃତ୍ରିମ ଶୋଭା କୁସୁମେ କୁସୁମେ
ଶୁକ ପିକ ଅଙ୍ଗେ ଆହା କି ସୁନ୍ଦର ।

ଏହି ଉପବନଟି ମୋର ଅତି ଆଦରର ଧନ, ମୋର ସ୍ନେହର ସମ୍ପଦ । ମୁଁ ଗୋଟି ଗୋଟି କରି ସମସ୍ତ ବୃକ୍ଷଲତାଗୁଡ଼ିକ ରୋପଣ କରିଅଛି, ଯତ୍ନରେ ବଢ଼ାଇଅଛି, ସ୍ନେହରେ ପ୍ରତିପାଳନ କରିଅଛି । ଏ ବଗିଚାଟିର ଜୀବନ ସଙ୍ଗେ ମୋ ଜୀବନର ସମ୍ବନ୍ଧ ଅତି ଘନିଷ୍ଠ । ମୋହର ଅନ୍ତିମ ସମୟରେ ଏହି ବୃକ୍ଷଲତାଗୁଡ଼ିକୁ ଦେଖି ଦେଖି ଇହଲୀଳା ଶେଷ କରିବି, ଏତିକି ମୋହର ଆନନ୍ଦ । ହେ ତରୁ ଲତା ! ତୁମ୍ଭମାନଙ୍କର ପ୍ରେମ ସ୍ୱାଭାବିକ, ତୁମ୍ଭମାନଙ୍କର ସ୍ନେହ ସ୍ୱାଭାବିକ; ତୁମ୍ଭମାନଙ୍କର ଜ୍ୟୋତି, ତୁମ୍ଭମାନଙ୍କର କାନ୍ତି, ତୁମ୍ଭମାନଙ୍କର ସୁଗନ୍ଧ, ସମସ୍ତ ସ୍ୱାଭାବିକ, ସମସ୍ତ ଅକୃତ୍ରିମ । ତେଣୁ ତୁମ୍ଭେମାନେ ମନୁଷ୍ୟଠାରୁ ଦେବତା ପର୍ଯ୍ୟନ୍ତ ସମସ୍ତଙ୍କଠାରେ ଆଦରଣୀୟ । ତୁମ୍ଭେମାନେ ମନୁଷ୍ୟସମାଜକୁ ଶିକ୍ଷା ଦିଅ—କୃତ୍ରିମ ପଦାର୍ଥର ଆଦର ଅତି ଅଳ୍ପକ୍ଷଣସ୍ଥାୟୀ, କୃତ୍ରିମ ନୀତି ପରିତ୍ୟାଗ କରି ସ୍ୱାଭାବିକ ଭାବ ପ୍ରକାଶ କର । ବନ୍ଧୁ ଯୋଗ୍ୟର ଯୋଗ କଦାଚ ସିଦ୍ଧ ହୁଏ

ନାହିଁ । ତରୁ ଲତା ! ତୁମ୍ଭେମାନେ ମୋର ଜୀବନ, ତୁମ୍ଭେମାନେ ମୋର ସ୍ନେହଧାମରୀ । ମୁଁ ତୁମ୍ଭମାନଙ୍କ ନିକଟରେ ମୋର ହୃଦୟର ଭାବ ବ୍ୟକ୍ତ କରିବ ।

ଗୀତ ।

ଏ ଜଗତେ ମୋର ନାହିଁ କେହି ଜନ
ଶୁଣିବ ମୋ ହୃଦବେଦନ ।

ସମାଜର ଗତି ଶିକ୍ଷା ସଙ୍ଗେ ସଙ୍ଗେ
ବଦଳି ଯାଉଛି କେତେ କେତେ ରଙ୍ଗେ,
ଯେତେ ଉଚ୍ଚ ଶିକ୍ଷା ତେତେ ଜାତ ଦୀକ୍ଷା,
ସମାଜ ଉଠିବ କେସନ ।

ଯାଙ୍କୁ ଯେଉଁ ଏହି ସମାଜ ଗଠନ,
ସେ ଯେବେ ଚାହିଁବେ ସମାଜ ପତନ,
କେ ଆଶା କରିବ ସମାଜ ରହିବ,
ସମାଜ ଲୁଟିବ ସଘନ ।

ପିତା ମୋର ଅନୁରୋଧ ଶୁଣିଲେ ନାହିଁ । ପିତା ମୋର ଅନୁରୋଧ ଶୁଣିବେ ନାହିଁ । ପିତା ସମାଜଭୟରେ ଅନୁରୋଧ ଶୁଣିବେ ନାହିଁ । ଅବିବାହିତା କନ୍ୟା ଘରେ ରହିବ—ସମାଜ ନିନ୍ଦା କରିବ । ସାଧାରଣ ଶିକ୍ଷାପ୍ରାପ୍ତ ଦରିଦ୍ର ସନ୍ତାନକୁ ଜାମାତା କରିବେ—ସମାଜ ଉପହାସ କରିବ । ଉଚ୍ଚଶିକ୍ଷାପ୍ରାପ୍ତ ଯୁବକମାନଙ୍କର ମୂଲ୍ୟ ଅତ୍ୟନ୍ତ ଅଧିକ । ଅଧିକ ହେଲେ ସୁଦ୍ଧା ପିତାଙ୍କ କସ୍ତୁ

କେବେ । ସର ଦ୍ୱାର ସବ ସମ୍ପଦ ହସ୍ତାନ୍ତର କରି କେବଳ ଏହି ଅଭାଗିନୀର ଭବିଷ୍ୟତ୍ ସୁଖ ଆଶାରେ ପିତା ଋଣଗ୍ରସ୍ତ ହେଲେ । ପିତାଙ୍କର ଋଣପରିଶୋଧର ଶକ୍ତି ନାହିଁ । ମୋ ନିମନ୍ତେ ପିତା ମାତା ଦରିଦ୍ର ହେବେ । ମୁଁ ସୁଖୀ ହେଲେ ଜଗତରେ କେଉଁ କାର୍ଯ୍ୟ ସାଧିତ ହେବ ? ମୁଁ ଏ ଜୀବନ ପରିତ୍ୟାଗ କରିବି । ପିତା ମାତାଙ୍କ ଦୁରବସ୍ଥାର ମୂଳ କାରଣ ହୋଇ ସେମାନଙ୍କ ଦୁରବସ୍ଥା ନିଜ ଚକ୍ଷୁରେ ଦର୍ଶନ କରିବି, ତାହା ଏ ପ୍ରାଣରେ ସହ୍ୟ ହେବ ନାହିଁ । ଶିକ୍ଷିତ ଯୁବକମାନଙ୍କ ଅତ୍ୟାଚାରରେ ବ୍ୟଥିତ ହୋଇ ମୁଁ ଆତ୍ମହତ୍ୟା କଲି— ଏ ବାର୍ତ୍ତା ଶ୍ରବଣ କରି ଯୁବକମାନେ ଯେବେ ଭବିଷ୍ୟତକୁ ଆତ୍ମବିକ୍ରୟବୃତ୍ତି ପରିତ୍ୟାଗ କରନ୍ତି, ତେବେ ମୋର ପ୍ରାଣବ୍ୟୟରେ ସମାଜର ବିଶେଷ ଉପକାର ସାଧିତ ହେବ । ଏହି ମୋର ଉପବନରେ ନିଜ ହସ୍ତରେ ଅତି ଯତ୍ନରେ ଚିତାଟି ପ୍ରସ୍ତୁତ କରିଅଛି । ଏହି ଚିତାରେ ପ୍ରବେଶ କରିବି, ନିଜ ହସ୍ତରେ ଅଗ୍ନିସଂଯୋଗ କରି ଇହଜୀବନ ଶେଷ କରିବି । ପିତା ମାତାଙ୍କଠାରୁ ବିଦାୟ ଗ୍ରହଣ କରି ପାରିଲି ନାହିଁ । ପତ୍ର ଖଣ୍ଡି ଲେଖିଅଛି, ଏହି ବୃକ୍ଷ ଡାଳରେ ଝୁଲାଇ ଦେବି, ଅବଶ୍ୟ ପିତା ମାତାଙ୍କର ହସ୍ତଗତ ହେବ ।

(ବୃକ୍ଷଶାଖାରେ ପତ୍ର-ସଂଲଗ୍ନ କରି)

ଆଉ ବିଳମ୍ବ କରିବି ନାହିଁ, ବିଳମ୍ବ କଲେ ବିଘ୍ନ ଘଟିବ । ହେ କରୁଣାନିଧାନ ପରମେଶ୍ୱର ! ତୁମ୍ଭେ ଜଗତର

ସୃଷ୍ଟିକର୍ତ୍ତା, ମନୁଷ୍ୟର ସତ ଗେ ଓ ପ୍ରବୃତ୍ତି ଉପରେ ତୁମ୍ଭର ଯଥେଷ୍ଟ ଅଧିକାର ଅଛି । ତୁମ୍ଭେ ଯୁବକମାନଙ୍କୁ ସୁମତି ଦିଅ । ସେମାନେ ଅସତ୍ ପ୍ରବୃତ୍ତି ପରିତ୍ୟାଗ କରନ୍ତୁ । ହେ ଯୁବକଗଣ ! ବିବାହକାଳରେ ପଣଗ୍ରହଣ ବୃତ୍ତି ପରିତ୍ୟାଗ କର । ସମାଜ ନଷ୍ଟ ହେଉଅଛି । ସମାଜକୁ ରକ୍ଷା କର ।

( ଦଳ ମଧ୍ୟରେ ପ୍ରବେଶ )

ଭଗବାନ୍ ! ମୋତେ ଦମ୍ଭ ଦିଅ, ସାହସ ଦିଅ, ମୋର କାର୍ଯ୍ୟରେ ମୋତେ ସାହାଯ୍ୟ କର ।

(ଦଳରେ ଅଗ୍ନି ସଂଯୋଗ କରି କରି )

ତୁମ୍ଭେହି ଦେଲ ପ୍ରାଣ ହେ ଯୁବକଗଣ,
ଅନ୍ତିମେ ମାଗୁଛି, ଛାଡ଼ ବିବାହର ପଣ ।

(ଦଳ ପ୍ରଜ୍ୱଳିତ ଏବ ଭଲ୍ଲ ପଦାଂଶ ଅଗ୍ନି ଅକ୍ଷରରେ ଦଳରେ ପ୍ରତିଫଳିତ)

ପଟକ୍ଷେପ ।



# ପଞ୍ଚମ ଅଭିନୟ ।



## ପ୍ରଥମ ଦୃଶ୍ୟ ।

ପଞ୍ଚୁନାୟକଙ୍କ ଅନ୍ତଃପୁର ।

(ପଞ୍ଚୁନାୟକ ଏବ ପଞ୍ଚୁନାୟକଙ୍କ ପତ୍ନୀ )

ପଞ୍ଚୁ-ପତ୍ନୀ—(ରୋଦନ) ମୋ କୁନ୍ତଳା କୁଆଡ଼େ ଗଲୁ ଲୋ ମୋ ପଞ୍ଚାଲ ! ( ରୋଦନ ) ମତେ ଅନ୍ଧୁଣୀ କରି ତୁ କୁଆଡ଼େ ଗଲୁ ଲୋ ମୋ ନିଧି ! (ରୋଦନ)

ପଞ୍ଚୁ—ପ୍ରିୟତମେ ! ଆମ୍ଭେମାନେ ଅଧୀର ହେଲେ ଯେ କୁନ୍ତଳା ଫେରି ଆସିବ, ତାହା ନୁହେ । ଅକାରଣରେ ରୋଦନ କରି ଫଳ କଣ ? ଭଗବାନଙ୍କର ନିୟତି କେହି ଖଣ୍ଡନ କରି ପାରିବେ ନାହିଁ । ଯାହା ହେବାର ତାହା ହୋଇଗଲା । କୁନ୍ତଳା ପୁଣ୍ୟବତୀ, କୁନ୍ତଳା ଅନିତ୍ୟ ଧାମ ପରିତ୍ୟାଗ କରି ନିତ୍ୟ ଧାମରେ ପ୍ରବେଶ କରିଅଛି ।

ପଞ୍ଚୁ-ପତ୍ନୀ—ମୋ କୁନ୍ତଳା ଲୋ ! ମୋ ହୃଦନିଧି ! (ରୋଦନ)

( ଜଣେ ଭୃତ୍ୟର ପ୍ରବେଶ )

ଭୃତ୍ୟ—ଆଜ୍ଞା ଦୟାନନ୍ଦ ବାବୁଙ୍କର ଜଣେ ବନ୍ଧୁ ସାକ୍ଷାତ୍ କରିବାକୁ ଆସିଛନ୍ତି ।

ପଞ୍ଚୁ—ଏଠାକୁ ଡାକ, କଣ୍ଟ ଆପତ୍ତି ନାହିଁ ।

(ଭୃତ୍ୟର ପ୍ରସ୍ଥାନ )

ପଞ୍ଚୁ-ପତ୍ନୀ—ବିଧାତା ରେ ! ତୁ ଏଇଆ କଲୁ ! (ରୋଦନ)

(ରସାନନ୍ଦଙ୍କ ବନ୍ଧୁ, ବୃନ୍ଦାବନଙ୍କର ପ୍ରବେଶ ଓ ଅଭିବାଦନ )

ବୃନ୍ଦା—ମହାଶୟ ! ମୁଁ ରସାନନ୍ଦ ବାବୁଙ୍କର ଜଣେ ବନ୍ଧୁ । ମୋର ଆଗମନର ଉଦ୍ଦେଶ୍ୟ ବ୍ୟର୍ଥ ହୋଇ ଗଲାଣି । ଆପଣଙ୍କ କନ୍ୟା ଆଧୁନିକ ଶିକ୍ଷିତ ଯୁବକମାନଙ୍କ ମୁଖରେ କାଳି ଲଗାଇ ଇହଧାମ ପରିତ୍ୟାଗ କଲେଣି । ଏ ସମୟରେ ଆପଣମାନଙ୍କୁ ଆଉ କହିବି କଣ ? ଯାହା ହେବାର ଥିଲା ହୋଇ ଗଲାଣି । ବର୍ତ୍ତମାନ ଶୋକାକୁଳ ହେବା ନିଷ୍ପ୍ରୟୋଜନ । କନ୍ୟାଙ୍କର ଆତ୍ମା ଶାନ୍ତିଲାଭ କରୁ, ଏହି ମାତ୍ର ପରମେଶ୍ୱରଙ୍କୁ ପ୍ରାର୍ଥନା କରନ୍ତୁ ।

ପଞ୍ଚୁ—ବନ୍ଧୁ ! ମନୁଷ୍ୟ କେବଳ କଳ୍ପନା କରେ ମାତ୍ର, କିନ୍ତୁ କଳ୍ପନା ପୂରଣ କରିବାର ଅଧିକାର ସମ୍ପୂର୍ଣ୍ଣ ବିଧାତାଙ୍କ ହସ୍ତରେ ।

ବୃନ୍ଦା—ମହାଶୟ ! ଆଉ କହିବାର ସମୟ ନୁହେ । ତେବେ ପ୍ରକାଶ ନ କରି ମନ ଶାନ୍ତ ହେଉ ନାହିଁ । ରସାନନ୍ଦର ତିଳେମାତ୍ର ଅପରାଧ ନାହିଁ । ସେ ଏହି ବିବାହ ସମ୍ପର୍କରେ ଦେବା ନେବାର ପ୍ରସ୍ତାବଗୁଡ଼ିକ ଶୁଣିବା କାଳରୁ ଜୀବନକୁ ବିଷମୟ ବୋଧ କରିଥିଲା । ଆଜ ଆପଣଙ୍କୁ ସମ୍ବାଦ ଦେବାକୁ ଆସିଥିଲି ଯେ, ଆପଣ ଆଉ

କୌଣସି ଦ୍ରବ୍ୟ ଦେବା ନିମନ୍ତେ ବ୍ୟସ୍ତ ହୋଇବେ ନାହିଁ ।
ଅମ୍ଭେମାନେ ଜାନଗୋଇଙ୍କୁ ଅନେକପ୍ରକାର ଅନୁରୋଧ କରିଥିଲୁଁ, ସେ କୌଣସିକ୍ରମେ ସମ୍ମତ ହେଲେ ନାହିଁ; ତାଙ୍କର ସମସ୍ତ ବନ୍ଧୁ ବାନ୍ଧବମାନଙ୍କୁ ଅନୁରୋଧ କଲୁଁ । ସମସ୍ତେ ଅମ୍ଭମାନଙ୍କୁ ସାହାଯ୍ୟ କରିବାକୁ ପ୍ରସ୍ତୁତ ହୋଇଥିଲେ । ଆପଣଙ୍କଠାରୁ ଜାନଗୋଇ ଯାହା ବସ୍ତୁ ଗ୍ରହଣ କରିଅଛନ୍ତି, ତାହା ସମସ୍ତ ପ୍ରତ୍ୟର୍ପଣ କରିବାକୁ ବାଧ କରିଥାନ୍ତୁ । ତାହା ନ ହେଲେ ବସାନନ୍ଦର ଜୀବନ ଅତ୍ୟନ୍ତ ଅଶାନ୍ତିମୟ ହୋଇଥାନ୍ତା । ଆପଣଙ୍କର ମଧ୍ୟ ସହାୟତା ବିଶେଷ ଆବଶ୍ୟକ ଥିଲା । ତେଣୁ ବସାନନ୍ଦର ଅନୁରୋଧମତେ ମୁଁ ଆପଣଙ୍କୁ ଜଣାଇବାକୁ ଆସିଥିଲି । ଅମ୍ଭମାନଙ୍କର ଦୁରଦୃଷ୍ଟ । ଭଗବାନ୍ ସମସ୍ତ କଳ୍ପନା ବ୍ୟର୍ଥ କରି ଦେଲେ । ଅମ୍ଭେମାନେ କଳଙ୍କ ସୃଷ୍ଟି କରିଅଛୁଁ, ଅମ୍ଭମାନଙ୍କୁ କଳଙ୍କ ବହନ କରିବାକୁ ହେବ ।

ପଣ୍ଡି—ବତ୍ସ ! ଭଗବାନ୍ ତୁମ୍ଭମାନଙ୍କୁ ଏପ୍ରକାର ସୁମତି ପ୍ରଦାନ କରିଅଛନ୍ତି, ତୁମ୍ଭେମାନେ ସମାଜର ହିତ ସାଧନରେ ବ୍ରତୀ ହୋଇଅଛ, ଏ ଶୋକ ସମୟରେ ଏ ସମ୍ବାଦ ଶୁଣି ବିଶେଷ ଶାନ୍ତି ଲାଭ କଲି । ଭଗବାନ୍ ତୁମ୍ଭମାନଙ୍କୁ ଦୀର୍ଘାୟୁ କରନ୍ତୁ, ସମାଜର ଶ୍ରୀବୃଦ୍ଧି ସାଧନରେ ତୁମ୍ଭମାନଙ୍କର ସହାୟ ହେଉନ୍ତୁ, ମୋର ଏତିକି ମାତ୍ର ଭଗବାନଙ୍କୁ ପ୍ରାର୍ଥନା । ତୁମ୍ଭମାନଙ୍କର ଏପ୍ରକାର ଉଦାର ଚରିତ୍ର ଭୁଲିଲା ଜାଣି ପାରିଲି ନାହିଁ, ଏତିକି ମୋର ଦୁଃଖ

ହଉଥିଲା । ତାହାର ଚିଠିର ଅଗ୍ରଭାଗରେ ରକ୍ତାକ୍ଷରରେ ଲିଖିତ ଥିଲା—

"ତୁମ୍ଭହେତୁ ଦେଲି ପ୍ରାଣ ହେ ଯୁବକଗଣ,
ଅନ୍ତିମେ ମାଗୁଛି, ଛାଡ଼ ବରାହୁର ପଣ ।"

ତାହାର ଶେଷ ଅନୁରୋଧ ମଧ୍ୟ ଶ୍ରବଣ କର—

( ୦୫ ପାଠ )

ଜନକ ଜନନି ! ଏ ହତଭାଗିନୀ ଭକ୍ତିଭରେ ପ୍ରଣାମ କରି ଶ୍ରୀଚରଣରୁ ମେଲାଣି ନେଉଅଛି । ପିତା ମାତାଙ୍କ ଋଣ ପରିଶୋଧ କରିବା କାରଣ ସନ୍ତାନର ଆଶା ଦୁରାଶା ମାତ୍ର । ଏ ଅଭାଗୀ ଶ୍ରୀଚରଣରେ ଋଣୀ ରହି ବିଦାୟ ହେଉଅଛି । ଯେବେ ଆପଣମାନଙ୍କ ଦୁରବସ୍ଥା ଦର୍ଶନ କରି ସମାଜର ସମସ୍ତ କନ୍ୟାପିତାମାନେ ସତର୍କ ହୁଅନ୍ତି, ସର୍ବସ୍ୱ ବିକ୍ରୟ କରି ଶିକ୍ଷିତ ଯୁବକ କ୍ରୟ କରିବାକୁ ଆଉ ପ୍ରଲୋଭିତ ନ ହୁଅନ୍ତି, ତେବେ ଆପଣମାନଙ୍କର ଦୁରବସ୍ଥାପ୍ରାପ୍ତିଦ୍ୱାରା ସମାଜର ମହୋପକାର ସାଧିତ ହେଲା ବୁଝିବାକୁ ହେବ । ଜନନି ! ମୁଁ ଜାଣୁଅଛି, ମୋର ମୃତ୍ୟୁରେ ଆପଣ ଅତ୍ୟନ୍ତ ଅଧୀର ହେବେ । ମୁଁ ଆପଣମାନଙ୍କ ଆଜ୍ଞା ଲଙ୍ଘନ କରି ବିଶେଷ ଅପରାଧ କରୁଅଛି । କିନ୍ତୁ ବିଶ୍ୱାସ କରେଁ, ଆପଣମାନେ ମୋର ଅପରାଧ ମାର୍ଜନା କରିବେ । ମତେ ଭାଗ୍ୟବତୀ କରିବା ଆଶାରେ ଆପଣମାନେ ନିଜର ଭାଗ୍ୟ ପରହସ୍ତଗତ କଲେ,

ଆପଣମାନଙ୍କର ଏ ସ୍ନେହର ତୁଳନା ଜଗତରେ ନାହିଁ ? ମୁଁ ଭାଗ୍ୟବଶ ହୋଇ ଆପଣମାନଙ୍କର ଏ ଦୁର୍ଦ୍ଦଶା ଦର୍ଶନ କରିବାକୁ ସାହସୀ ହେଲି ନାହିଁ । ମାତ ! ମୋହହେତୁ ଅତୁର ହୋଇ ତୁମ୍ଭେ କ୍ରନ୍ଦନ କଲେ ଯେବେ ଶିକ୍ଷିତ ଯୁବକମାନଙ୍କର ଜନନୀମାନେ ଶ୍ରବଣ କରି ନିଜ ନିଜର ସ୍ୱାମୀ ଓ ପୁତ୍ରମାନଙ୍କର ମତ ଗତି ପରିବର୍ତ୍ତନର ଯତ୍ନ କରନ୍ତୁ, ତାହାହେଲେ ସମାଜର ଯଥେଷ୍ଟ ଉପକାର ହେବ । ଏତିକି ମୋହର ନିବେଦନ । ଇତି ।

ଅଭାଗୀ କନ୍ୟା

କୁନ୍ତଳା ।

(ବୃନ୍ଦାବନ ପ୍ରତି)

ବତ୍ସ ! ମୋର ଅଉ ବକ୍ତବ୍ୟ କିଛି ନାହିଁ । ରସାନନ୍ଦଙ୍କୁ ମୋର ଆଶୀର୍ବାଦ ଜଣାଇଦେବ । ଭଗବାନଙ୍କଠାରେ ଭକ୍ତି ରଖି ସମସ୍ତେ ସମାଜ ସଂସ୍କାରରେ ବ୍ରତୀ ହୁଅ, ଏତିକି ମୋର ଅନୁରୋଧ ।

ବୃନ୍ଦା—ଆପଣମାନେ ଦେବତା, କୁନ୍ତଳା ଦେବୀ, ଆମ୍ଭେମାନେ ମହାପାପୀ, କୁନ୍ତଳା ଆମ୍ଭମାନଙ୍କ ପାପ ସହ୍ୟ କରି ନ ପାରି ଦେହତ୍ୟାଗ କଲେ । ଆମ୍ଭେମାନେ ଘୋର ଅପରାଧୀ । ଆପଣମାନଙ୍କୁ ସାନ୍ତ୍ୱନା ଦେବାର ମଧ୍ୟ ଅମ୍ଭମାନଙ୍କର ଅଧିକାର ନାହିଁ । ମୁଁ ବିଦାୟ ନେଉଛି ।

(ଅଭିବାଦନ ଓ ପ୍ରସ୍ଥାନ)

ପଃ—ପ୍ରିୟତମେ ! ଧୈର୍ଯ୍ୟ ଧର । (ସ୍ୱଗତ) ରସାନନ୍ଦର ହୃଦୟ ଅତି ଉଦାର । କାନଗୋଇଙ୍କ ସନ୍ତାନ ହୋଇ ତାହାର ଅନ୍ତଃକରଣ ଏପରି ମହତ୍ ବୋଲି ମୋର ବିଶ୍ୱାସ ନ ଥିଲା । ସବୁ ବିଧାତାଙ୍କ କୌଶଳ । କର୍ଦ୍ଦମରେ ପଦ୍ମପୁଷ୍ପ ପ୍ରସ୍ଫୁଟିତ ହୁଏ, ଫଣୀ ମସ୍ତକରେ ମଣି ଥାଏ । (ପତ୍ନୀ ପ୍ରତି) ପ୍ରିୟେ ! ଧୈର୍ଯ୍ୟ ଧର । କୁନ୍ତଳାର ଅନୁରୋଧ ପ୍ରତିପାଳନ କରିବା । ତେତକ ଆମ୍ଭମାନଙ୍କର ଶାନ୍ତି । ତେତକ ଆମ୍ଭମାନଙ୍କର ଜୀବନର ଶେଷ ବ୍ରତ ।

ଦ୍ୱିତୀୟ ଦୃଶ୍ୟ ।

ଚୌଧୁରୀଙ୍କ ଗୃହ ସମ୍ମୁଖସ୍ଥ ମାର୍ଗ ।

(କେତୋଟି ବାଳକାଙ୍କର ପ୍ରବେଶ)

ଗୀତ ।

ଚାଲ ଲୋ ଚାଲ ଲୋ ଯିବା ଚାଟଶାଳୀ
ଉଇଁଲେଣି ରବି ଚକ୍ର,
ରାବିଲେଣି କାକ ଶୁଭିଲାଣି ଡାକ
ପଡିଲାଣି ବେଗ ଖବ୍ର ।
ଯିବା ଯେବେ ଅଗେ ଛୁଟି ହେବା ବେଗେ
ଚନ୍ଦ୍ରେ ଚନ୍ଦ୍ରେ ପଢି ପାଠ,
ନ ଆସିଲେ ପାଠ ଗୁରୁ ଦେବେ ଛାଟ
ନାହିଁ ତ ହାତୁ ଗୁହାର ।

୧ମ ବାଳ—ହେଇ ଦେଖିଲୁ ଲୋ ଏମାନେ ସବୁ କିଏ !

୨ୟ ବାଳ—ଇଲୋ କିଏ ଲୋ ଏ ସବୁ ! ଏମିତି କଣ ବେଶ ହୋଇଛନ୍ତି ! ଗୋଡ଼ ହାତରେ ଜୁତା ବଳା, କନେଷ୍ଟ-ବଲଗୁଡ଼ାକ ତାଙ୍କ ପାଖେ ପାଖେ ଚାଲିଛନ୍ତି !

(କନେଷ୍ଟବଲଗଣ ଏବ କମ୍ବଳ ବୋଝ୍ ସହ କଏଦମାନଙ୍କର ପ୍ରବେଶ)

୩ୟ ବାଳ—ଇଲୋ ଏ ଆଗ ଜଣକ ତ କଣ ସଦାନନ୍ଦ ଚଉଧୁରୀ ପରି ଦିଶୁଛି ! ତାଙ୍କର ଘର ଆଡ଼କୁ ତ ଚାହିଁକି ଆସୁଛନ୍ତି ! ଇଲୋ କଏଦ ହେଲେ ଏମିତି ବେଶ କରି କରନ୍ତି ପରା ?

୪ର୍ଥ ବାଳ—ରହ ରହ ଦେଖିବା । ତାଙ୍କୁ କଣ ଏମିତି ତାଙ୍କ ଘରେ ଛଡ଼ି ଦେଇ ଯିବେ ?

୧ମ କଏଦୀ—ହେ କନେଷ୍ଟବଲ ବାବୁ ! ମତେ ଏ ବାଟରେ କାହିଁକି ଆଣିଲ ? ରେଳକୁ ଯିବାପାଇଁ ଆଉ କଣ ବାଟ ନାହିଁ ? ଏହ ଆମ୍ଭମାନଙ୍କ ଘର, ମତେ ଏ ବେଶରେ ଏ ବାଟରେ ଆଣିଲ, ମୋ ପଡ଼ା ପଡ଼ୋଶିମାନେ ଦେଖି କଣ କହିବେ !

୧ମ କନେଷ୍ଟ—ଅରେ ହାମେ କାଅଣ କାରବା ? ରେଲ୍‌କୁ ଯାନେକା ରସ୍ତା ତୋ ତୋହ୍ମାର୍ ଘାରକା ସାମନାମେ ଲହୁଚି, ହାମ୍‌କୁ କାଅଣ ଚାର ଅଛି ? ପହେଲେସେ କାହ ରଖିଥାନୁ ତ, ହାମେ ଦୋ-ସରା ଗଟା କାଥା

କାଢ଼ଥାନ୍ତା । କେଲ୍ଲର ବାବୁଙ୍କୁ କାହିଁକେ ଦୋଷରଶି ସ୍ତ୍ରୀ ପାକ୍ଡ଼ଥାନ୍ତା ! ଅବ କାହିଁଲେ କାଞ୍ଚଣ କାଢ଼ିବା ?

୧ମ କଏଦୀ—(ସ୍ୱଗତ) ଏ କପାଳରେ ଏହି ଭୋଗ ଥିଲା ! ପିତା ସହର ମଧ୍ୟରେ ସର୍ବାପେକ୍ଷା ଧନବାନ୍ । ଅମ୍ଭେମାନେ ଧନଗର୍ବରେ ଗର୍ବିତ ହୋଇ ସଂସାରକୁ କ ତୁଚ୍ଛ ମନେ କରୁ ନ ଥିଲୁଁ ! ଏବେ କର୍ମଫଳ ଭୋଗ କରିବାକୁ ହେଲା । ପିତା ଅନରେଷ୍ଟ ମାଜିଷ୍ଟ୍ରେଟ ଥିଲେ, ଏବେ ସେ ଅଁପି ହାଜତରେ ବାସ କଲେ । ଭାଇ ମୋହର କଲିକତା ଜେଲରେ ରହିଲା, ମୁଁ ଚାଲିଲି ଭାଗଲପୁର ଜେଲ୍କୁ । ହା ଅଦୃଷ୍ଟ ! ଏହି ଅମ୍ଭମାନଙ୍କ ଗୃହ ! ଏ ଅଞ୍ଚଳରେ ସର୍ବଶ୍ରେଷ୍ଠ ଗୃହ ! ବର୍ତ୍ତମାନ ଏ ଗୃହ କାହା ଭାଗ୍ୟରେ ଭୋଗ କରିବାକୁ ଅଛି ! ଅମ୍ଭେମାନେ ଗୋଟି ଗୋଟି ହୋଇ କାଲକୁ କାଲର ଜେଲଖାନାମାନଙ୍କରେ ବନ୍ଦ ହୋଇ ରହିଲୁଁ ! ହେ ଭଗବାନ୍ ! ଅମ୍ଭମାନଙ୍କ କର୍ମରେ ଏହି ଥିଲା ! ଶ୍ରୀରାମ ସାମନ୍ତର ଡକ୍ରୀଜାରି କରି ଅମ୍ଭମାନଙ୍କ ଘରଦ୍ୱାର ସମସ୍ତ ଦଖଲ ନେବ, ସ୍ତ୍ରୀ ବାଳକମାନଙ୍କୁ ଘରୁ ବାହାର କରିଦେବ । ଅହା ! ସେମାନଙ୍କର କ ଗତି ହେବ ! ହେ ଭଗବାନ୍ ! ଅମ୍ଭମାନଙ୍କ କର୍ମର ଭୋଗ ତ ଶେଷ ହୋଇ ନାହିଁ ! ଆହୁରି ଅଛି !

୨ୟ କନେ—ଅରେ ଚଲୋ ଜଲ୍ଦି । (୧ମ କଏଦୀକୁ ଧକ୍କା ମାରି) ବକ୍ ବକ୍ ପିଛେ କରେଗେ ।

(ଚନ୍ଦ୍ରଧରଙ୍କ ପତ୍ନୀ, ପୁତ୍ରବଧୂଗଣ ଓ କେତେକଜଣ ଗ୍ରାମ୍ୟ ରମଣୀ ଓ ଗ୍ରାମ୍ୟ ଲୋକଙ୍କର ପ୍ରବେଶ)

ଚନ୍ଦ୍-ପତ୍ନୀ— ମୋ ବାପ ସଦାନନ୍ଦ ରେ ! ମୋ ଜୀବନପଞ୍ଝାଳ ! ତୋ କର୍ମରେ ଏହ ଥିଲା ? ବାପ ଜମାଦାର ହୋ ! ତୁମେ ମୋର ଧର୍ମର ପିତା । ମୋ ଜୀବନ ତୁମେ କୁଆଡ଼େ ନେଇ ଯାଉଚ ? ଅମମାନଙ୍କୁ କାଙ୍ଗାଲୁଣୀ କରଦେଇ ବାପ ପୁଅ ସମସ୍ତେ କୁଆଡେ ଚ଼ଲି ଯାଉଚ ରେ ମୋ ଦାଧ ! ( ରୋଦନ )

୧ମ ଜନେ—ଅରେ କ୍ୟା ଜଞ୍ଜାଲ୍ ହୁଅ ରେ ! ଏ ଅଉରତ୍ଲୋକ୍ କୁ କୋଉନ୍ ଇହାଁ ଲାୟା ରେ । ଚଲୋ, ଚଲୋ, ଜଲଦ ଚଲୋ ।

(ଜଏସୀ ଓ କନେଷ୍ଟବଲମାନେ ଅଗ୍ରସର)

ଚନ୍ଦ୍ର-ପତ୍ନୀ—ବାପ ଜମାଦାର ! ଆଉ ଟିକଏ ରହ ! ମୁଁ ଆଉ ଟିକଏ ଦେଖେଁ, ମୋ ଜୀବନ ତୁମେ କୁଆଡ଼େ ନେଇ ଯାଉଚ ହୋ ମୋ ବାପ !

ଜ୍ୟେଷ୍ଠ ପୁତ୍ରବଧୂ—ହା ବିଧାତା ରେ ! ମୋ କର୍ମରେ ଏଇଆ ଦେଖିବାକୁ ଥିଲା ! ହା କପାଳ ! (ମୂର୍ଚ୍ଛା ଓ ପତନ )

୧ମ କନେଷ୍ଟ—ସମାଲୋ ସମାଲୋ ଭୟ୍ୟା ! କୋଉନ୍ ଖଡ଼ା ହୁଅ । ଅରେ ତୁମ୍ଲୋକଙ୍କ୍ କାଥା କାହବାକୁ ହାମ୍କୁ ମାନା ଅଛ ।

୨ୟ କନେଷ୍ଟ—ଚଲୋ, ଚଲୋ, ଜଲଦ ଚଲୋ, ଜଲଦ ଚଲୋ ।

( ଜଏଦ ଓ କନେଷ୍ଟବଲମାନଙ୍କର ପ୍ରସ୍ଥାନ )

ଚଉ-ପତ୍ନୀ—ବାପ ଜମାଦାର ରେ ! ବାପ ସଦାନନ୍ଦ ରେ !
ମୋ ଜୀବନ କୁଆଡ଼େ ଗଲୁ ରେ ! ମୋ ପ୍ରାଣଧନ!

(ମୂର୍ଚ୍ଛା ଓ ପତନ । ଗ୍ରାମ୍ୟ ରମଣୀମାନଙ୍କର ଚଉଧୁରିଙ୍କ ପତ୍ନୀ ଓ ପୁତ୍ର-ବଧୂମାନଙ୍କୁ ଧରି ପ୍ରସ୍ଥାନ । ଗ୍ରାମ୍ୟ ଲୋକମାନଙ୍କର ପ୍ରସ୍ଥାନ ।)

ବାଳିକାଗଣ—

ଗୀତ ।

ଜଗତର ଲୀଳା ଏହି,
କରମ ଫାଟିଲେ କରମ ଭୁଞ୍ଜିବ
ରଖି ନ ପାରିବେ କେହି ।

ବୃଥା ଦମ୍ଭ ଅଭିମାନ,
ଯା କର୍ମ ଯେମନ୍ତ ତା ଫଳ ତେମନ୍ତ
ନାହିଁ ତହିଁ ବଳ୍ପ ପାନ ।

ଆଜ ଯେ ମଣ୍ଡଳମଣି,
କାଲ୍ଲି ସେ ଫକୀର ବୁଲେ ଘର ଘର
ମାଗି ଖାଏ ଖୁଦକଣି ।

ଜଗତର ଲୋକେ ଅନ୍ଧ,
ନଜ କର୍ମ କଥା ନ ଭାବ ନ ଚନ୍ତ
ଖୋଜୁଥାନ୍ତି ପର ମନ୍ଦ ।

ପର ଧନେ ଲୋଭ କରି
ଧରମ କରମ ସକଳ ପାସୋରି
ହେଉଛନ୍ତି ଏତେ ସରି ।

ଅଛା ମାଢ ବଧାତାର,
ଯେ ଯାହା ମାଗଇ ସେ ତାହା ଲଭଇ
ପଛେ ଦଣ୍ଡ ପୁରସ୍କାର ।
ଅହ୍ନେ ଅବବେକା ଜନ,
ନାଢ ନାଢ ଦେଖି ଯେବେ ନ ଶିଖିଲ
ତେବେ ଭୋଗିବ ଏସନ ।



ତୃତୀୟ ଦୃଶ୍ୟ ।

( ସନ୍ୟାସୀ ବେଶରେ ଉପାଦେ ପ୍ରବେଶ । )

ଉପା—ଆହା ! ଆହା ! କୁନ୍ତଳା ଆତ୍ମହତ୍ୟା କଲା ! କୁନ୍ତଳା ଦେହ ତ୍ୟାଗ କଲା ! କୁନ୍ତଳା ଇହସଂସାରରେ ନାହିଁ ! କୁନ୍ତଳା ଇହସଂସାର ପରତ୍ୟାଗ କର ସ୍ୱର୍ଗାରୋହଣ କର-ଅଛ ! କୁନ୍ତଳା ଅନତ୍ୟ ଭୌତକ ଦେହକୁ ଅଗ୍ନିଦଗ୍ଧ କରଅଛ ! କୁନ୍ତଳା ଶିକ୍ଷିତ ଯୁବକମାନଙ୍କ ଗର୍ବିତ ବଦନରେ ଭସ୍ମ ଲେପନ କରଅଛ ! କୁନ୍ତଳା ଅନତ୍ୟ ସଂସାର ପରତ୍ୟାଗ କର ପଳାୟନ କରଅଛ ! ମୁଁ ଏହ ତାହାର ଚତାର ଭସ୍ମ ସଂଗ୍ରହ କରଅଛ, ଏହ ଭସ୍ମ ମସ୍ତକରେ ଧାରଣ କରବ । (ମସ୍ତକରେ ଭସ୍ମ ଲେପନ) ମୁଁ ମହାପାତକୀ ! ମୁଁ ଘୋର ଅପରାଧୀ ! ମୋର ପାପର ପ୍ରାୟଶ୍ଚିତ୍ତ ନାହିଁ ! ମୁହିଁ କୁନ୍ତଳାର ମୃତ୍ୟୁର ଏକମାତ୍ର କାରଣ ! କେଉଁ ନରକରେ ମୋର ଏ ପାପର ଶାସ୍ତି-

ବିଧାନ ହେବ ! ହେ କୁନ୍ତଳେ ! ତୁମ୍ଭେ ଦେବୀ, ତୁମ୍ଭେ ଦେବକନ୍ୟା, ତୁମ୍ଭର ହୃଦୟ ଅତି ଉଦାର, ତୁମ୍ଭର କ୍ରିୟା ଅମାନୁଷିକ ! ତୁମ୍ଭେ ସମାଜର ବିକୃତି ନିବାରଣ ଆଶାରେ ନିଜର ଜୀବନ ବିସର୍ଜନ କଲ ! ମୁଁ ହତଭାଗ୍ୟ ତୁମ୍ଭର ଭୃତ୍ୟପଦକୁ ସୁଦ୍ଧା ଯୋଗ୍ୟ ନୁହେ । ମୁଁ ଘୋର ଅପରାଧ କରିଅଛି, ମୋର ଅପରାଧର କ୍ଷମା ନାହିଁ । ଏହି ତୁମ୍ଭର ଚିତ୍ରପଟ୍ଟ ଖଣ୍ଡି ! ଅହା ! କି ପ୍ରତିମୂର୍ତ୍ତି ! ସମସ୍ତ ଅକୃତ୍ରିମ, ସମସ୍ତ ସ୍ୱାଭାବିକ, କୃତ୍ରିମ ସମାଜର କୃତ୍ରିମ ଭାବ ଅଦୌ ସ୍ପର୍ଶ କରି ନାହିଁ ; କେବଳ ଜ୍ୟୋତିରେ ହୃଦୟର ସରଳତା ସ୍ପଷ୍ଟାକ୍ଷରରେ ବ୍ୟକ୍ତ ହେଉଅଛି । ଓଷ୍ଠାଧରରେ ଉଦାର ହୃଦୟଟି ପ୍ରସ୍ଫୁଟିତ ରହିଅଛି । ଆହା ! ଏହି ମୂର୍ତ୍ତିଟି ଜଗତରେ ବିଦ୍ୟମାନ ଥିଲେ, ଜଗତର କି ଉପକାର ହୋଇ ନ ଥାନ୍ତା! ଏହି ବସ୍ତୁ ମୋର ବିଭୂତି, ଏହି ପ୍ରତିମୂର୍ତ୍ତି ମୋହର ଆରାଧ୍ୟ ଦେବୀ । ଚିର-ଦିନ ଏହି ମୂର୍ତ୍ତିଟି ପୂଜା କରିବି । ଏହି ବିଭୂତିରେ ଭୂଷିତ ହୋଇ ସମାଜରେ ଶିକ୍ଷା ଦେବି, ଶିକ୍ଷିତ ଯୁବକମାନଙ୍କର ଦ୍ୱାରସ୍ଥ ହୋଇ କୁନ୍ତଳାର ଗୁଣ କୀର୍ତ୍ତନ କରିବି, ଭିକ୍ଷା ମାଗିବି—ବିବାହର ପଣ ପରିତ୍ୟାଗ କର । ସଂସାର ବିଷମୟ, ସମାଜ କୃତ୍ରିମତାମୟ, ସଂସାରରେ ମୋର ସୁଖ ନାହିଁ, ସମାଜରେ ମୋର ଶାନ୍ତି ନାହିଁ, ମୁଁ ସଂସାର ତ୍ୟାଗ କରି ଏହି ବ୍ରତରେ ବ୍ରତୀ ହେବି ।

( ପ୍ରସ୍ଥାନ )



## ଚତୁର୍ଥ ଦୃଶ୍ୟ ।

### ରାଜପଥ ।

( ଦତ୍ତହରି ଜାନକୀଗୋ ଏବ ତାଙ୍କ ପତ୍ନୀଙ୍କର ପ୍ରବେଶ । )

ଦତ୍ତ—ଅହା ! ରସାନନ୍ଦ ରେ ! ତୁ କୁଆଡ଼େ ଗଲୁ ! ଏ ବୃଦ୍ଧ ବୟସରେ ପିତା ମାତାଙ୍କୁ ଅନ୍ଧ କରି କୁଆଡ଼େ ଗଲୁ ରେ ରସାନନ୍ଦ ! ( ରୋଦନ )

ଦତ୍ତ-ପତ୍ନୀ—ବାପ ରେ ମୋ ଅନ୍ଧୁଣୀନୟନ ! (ରୋଦନ) ମୋ ପଝୋଳ କୁଅଡ଼େ ଗଲୁ ରେ ମୋ ନିଧି ! (ରୋଦନ)

ଦତ୍ତ—ବାବା ରେ ! ମୁଁ କେତେ ଆଶା ହୃଦୟରେ ପୋଷଣ କରିଥିଲି । କେତେ ଦୁଃଖ, କେତେ କଷ୍ଟ ସହ୍ୟ କରି ତୋତେ ଲେଖାପଢ଼ା ଶିଖାଇଥିଲି । ସମସ୍ତ ଆଶା ବିଫଳ ହେଲା । ମୋର ଆଉ ଧନ ଲାଭର ଆଶା ନାହିଁ, ଅର୍ଥରେ ଲୋଭ ନାହିଁ, ସେ ପାପାଶା ନିବୃତ୍ତ ହୋଇଅଛି । ମୋର କେବଳ ତୋତେ ଲୋଡ଼ା । ମୋର ଜଗତରେ ଆଉ କିଛି ଲୋଡ଼ା ନାହିଁ । ବାବା ! ତୁ ଥରେ ଫେରି ଆ, ମୁଁ ପଞ୍ଚନାୟକଙ୍କଠାରୁ ଯାହା କିଛି ଗ୍ରହଣ କରିଅଛି, ତାହା କଡ଼ାକୁ କଡ଼ା ଫେରାଇ ଦେବି । ତୋର ଯାହା ଇଚ୍ଛା ତାହା କରିବୁ । ତୋ ଇଚ୍ଛାର ଆଉ କଦାପି ପ୍ରତି-ବନ୍ଧକ ହେବି ନାହିଁ । ବାବା ରେ ! ତୁ ଥରେ ମାତ୍ର ଫେରି ଆ, ଥରେ ଦେଖିଲେ ଫେରି ଅସି ପସାସା କରି ଯା ।

ଦତ୍ତ-ପତ୍ନୀ—ବାବା ରେ ! ନିଧି ମୋର ! ଘର, ଦ୍ୱାର, ଧନ, ରତ୍ନ ମୋର ସବୁ ଯାଉ, ତୁ ଥରେ ଅସି ମତେ ମା

ବୋଲି ଡାକି ଯା ରେ ! ମୋ ପଞ୍ଝାଳ ! ତୁ କୁଆଡ଼େ ଗଲୁ ରେ ! (ରୋଦନ)

(ସନ୍ନ୍ୟାସିବେଶରେ ଗୋବନ୍ଦଚନ୍ଦ୍ର ପଟ୍ଟନାୟକ ଏବ ପଟ୍ଟନାୟକଙ୍କ ପତ୍ନୀଙ୍କର ପ୍ରବେଶ । )

ଗୋବ—କିଏ ! କାନଗୋଇ ମହାଶୟ ! ଆପଣମାନେ ରୋଦନ କରୁଅଛନ୍ତି କାହିଁକି ?

ଦତ୍ତ—ଆପଣମାନେ କିଏ ? ଆପଣ ପଟ୍ଟନାୟକେ ! ଆପଣମାନେ ଗୃହ ତ୍ୟାଗ କରି ସନ୍ନ୍ୟାସୀ ହୋଇଅଛନ୍ତି ! ଆମ୍ଭ-ମାନଙ୍କର ଏକମାତ୍ର ପୁତ୍ର ରସାନନ୍ଦ ଆମ୍ଭମାନଙ୍କ ବକ୍ଷରେ ବଜ୍ରାଘାତ କରିଅଛି । ରସାନନ୍ଦ ସଂସାର ତ୍ୟାଗ କରି ପଳାୟନ କରିଅଛି । ଆମ୍ଭମାନଙ୍କର ଜୀବନର ଆଶା ଶେଷ ହୋଇଅଛି । ଆପଣଙ୍କଠାରୁ ଯେ ସମସ୍ତ ଅର୍ଥ ଗ୍ରହଣ କରିଥିଲି, ତାହା ସମସ୍ତ ପ୍ରତ୍ୟର୍ପଣ କରୁଅଛି । ଆପଣମାନେ ଗ୍ରହଣ କରନ୍ତୁ । ଗୃହକୁ ଫେରି ଯାଉନ୍ତୁ । ଆପଣମାନଙ୍କର ସମ୍ପଦ ଆପଣମାନେ ଭୋଗ କରନ୍ତୁ ।

ଗୋବ—ମାଫ କରିବାହେବେ । ଆମ୍ଭମାନଙ୍କର ଆଉ ଅର୍ଥରେ ପ୍ରୟୋଜନ ନାହିଁ । ଆମ୍ଭମାନଙ୍କର ଆଉ ସମ୍ପଦରେ ସୁଖ ନାହିଁ । ଆମ୍ଭମାନଙ୍କର ଏକମାତ୍ର ଅମୂଲ୍ୟ ସମ୍ପଦ କୁନ୍ତଳା । କୁନ୍ତଳା ଭିନ୍ନ ଜଗତରେ ଆଉ ଆମ୍ଭ-ମାନଙ୍କର କିଛି ନ ଥିଲା । ସେହି ଏକମାତ୍ର ଅମୂଲ୍ୟ ରତ୍ନ ଆଉ ଜଗତରେ ନାହିଁ । ସେ ନିଜ ଦେହକୁ ଅଗ୍ନିଦଗ୍ଧ କରି ଇହସଂସାର ପରିତ୍ୟାଗ କରିଅଛି । ଆମ୍ଭମାନଙ୍କର

ସଂସାରର ସମସ୍ତ ବାସନା ତାହା ସହିତ ଭସ୍ମ ହୋଇ ଯାଇଅଛି ।

ଦତ୍ତ—ପଞ୍ଚନାୟକ ମହାଶୟ ! ମୁଁ ଏ ସଂସାରରେ ଘୋର ପାତକୀ । କୁନ୍ତଳାର ଆତ୍ମହତ୍ୟାର ମୂଳକାରଣ ମୁହିଁ । ମୁହିଁ ଆପଣମାନଙ୍କର ଦୁର୍ଗତିର ମୂଳ । ମୋହର ଦୋଷରେ ଆପଣମାନେ ଗୃହତ୍ୟାଗୀ । ମୋହର ଦୋଷରେ ମୋର ଏକମାତ୍ର ପୁତ୍ର ଗୃହତ୍ୟାଗୀ ହେଲା । ସେ ଆଉ ଫେରି ଆସିବ, ମୋର ବିଶ୍ୱାସ ହେଉ ନାହିଁ । ଆମ୍ଭ-ମାନଙ୍କର ଆଉ ଗୃହରେ କି ପ୍ରୟୋଜନ ଅଛି ! ଆପଣ-ମାନଙ୍କର ଅର୍ଥ ଆପଣମାନେ ଗ୍ରହଣ କରନ୍ତୁ । ଆମ୍ଭ-ମାନଙ୍କର ସେ ଅର୍ଥରେ ତିଳେମାତ୍ର ଅଧିକାର ନାହିଁ ।

ଗୋବି—ଆମ୍ଭେମାନେ ପୁନର୍ବାର ଯେ ଅର୍ଥ ଗ୍ରହଣ କରିବୁଁ କାହିଁକି ? ଏ ସମସ୍ତ ଅନର୍ଥର ମୂଳ ସେହି ଅର୍ଥ । କୁନ୍ତଳାର ଶେଷ ଅନୁରୋଧ ପାଳନ କରିବୁଁ । ଦ୍ୱାରେ ଦ୍ୱାରେ ଭ୍ରମଣ କରି ସମାଜରେ ଆମ୍ଭମାନଙ୍କର ଦୁରବସ୍ଥା ଘୋଷଣା କରିବୁଁ । ସମାଜକୁ ଅନୁରୋଧ କରିବୁଁ, ବିବାହର ବ୍ୟୟ ସଙ୍କୋଚ କର । ଶିକ୍ଷିତ ଯୁବକମାନଙ୍କୁ ପ୍ରାର୍ଥନା କରିବୁଁ, ତୁମ୍ଭେମାନେ ପଣର ଦାବି ପରିତ୍ୟାଗ କର । ତୁମ୍ଭେମାନେ ସମାଜର ଆଶା ଭରସା । ତୁମ୍ଭେମାନେ ସମାଜ ଗଠନ କର, ନଷ୍ଟ କର ନାହିଁ ।

ଦତ୍ତ—ମୋହର ପାପରେ ଆପଣମାନେ ଗୃହତ୍ୟାଗୀ । ଆମ୍ଭ-ମାନଙ୍କର ଏକମାତ୍ର ସନ୍ତାନ ରସାନନ୍ଦ ଦେଶତ୍ୟାଗୀ

ହେଲା । ଆମ୍ଭମାନଙ୍କର ଆଉ ସଂସାରରେ କି ପ୍ରୟୋଜନ ଅଛି ? ଆମ୍ଭେମାନେ ମଧ୍ୟ ଗୃହତ୍ୟାଗୀ ହେଉଁ । ଭଗବାନଙ୍କର ମାର୍ଗ ଅନ୍ୱେଷଣ କରିବୁଁ । ଆପଣମାନଙ୍କର ଅର୍ଥର ବ୍ୟବସ୍ଥା ଆପଣମାନେ କରନ୍ତୁ । ଆପଣମାନଙ୍କର ଅର୍ଥ ଆପଣମାନେ ନେଇଯାନ୍ତୁ ।

ଗୋବ—ଆମ୍ଭେମାନେ ଆଉ ଫେର ସେ ଅର୍ଥ ଗ୍ରହଣ କରିବୁଁ ନାହିଁ । ଆପଣ ଉକ୍ତ ଅର୍ଥ ବ୍ୟୟରେ "କୁନ୍ତଳା ବିଦ୍ୟାଳୟ" ନାମରେ ଗୋଟିଏ ବାଳିକା ବିଦ୍ୟାଳୟ ସ୍ଥାପନର ବ୍ୟବସ୍ଥା କରିଦେଉନ୍ତୁ । ଉକ୍ତ ବିଦ୍ୟାଳୟରେ ବାଳିକାମାନଙ୍କର ଗୃହକର୍ମ ଶିକ୍ଷା ଏବଂ ଆତ୍ମମର୍ଯ୍ୟାଦା ବୁଝିବା କାରଣ ଯେଉଁରୂପ ଶିକ୍ଷା ଆବଶ୍ୟକ, ତାହାର ବ୍ୟବସ୍ଥା କରି ଆପଣମାନେ ପୁଣ୍ୟର ପଥ ଅନୁସରଣ କରନ୍ତୁ । ଉକ୍ତ ବିଦ୍ୟାଳୟ ଉତ୍ତରୋତ୍ତର ଉନ୍ନତିଲାଭ କରି କୁନ୍ତଳାର ନାମକୁ ଚିରସ୍ମରଣୀୟ କରୁ ।

ଦତ୍ତ—ଆପଣଙ୍କ ଆଜ୍ଞା ଶିରୋଧାର୍ଯ୍ୟ ।

(ଦତ୍ତଙ୍କର ଓ ତାଙ୍କ ପତ୍ନୀଙ୍କର ପ୍ରସ୍ଥାନ । ଦୁଇଜଣ କୋଷ୍ଟବୈଶିଙ୍କର ପ୍ରବେଶ ।)

କୋଷ୍ଟ-ଗଣ—ପଇସା ଗୋଟିଏ ଦିଅ ବାବା ! ରୋଗିଟାମାନଙ୍କୁ ଗୋଟିଏ ଗୋଟିଏ ପଇସା ହୁକୁମ୍ ହଉ ମା ! ଦିନଯାକ କିଛି ଖାଇ ନାହୁଁ । ଗୋଟିଏ ଗୋଟିଏ ପଇସା ମିଳୁ ବାବା !

୧ମ କୋଷ୍ଟ—(ସଚକିତେ) ଖାମିନ୍ଦ ! ଖାମିନ୍ଦାଣି !

(ସାଷ୍ଟାଙ୍ଗ ପ୍ରଣାମ)

ଗୋବ—(ସଚକିତରେ) କ ଏ ! ସ୍ୱପ୍ନ ! ତୁମର ଏ ଦଶା !

୨ୟ କୋଷ୍ଟ—ଦଣ୍ଡବତ ବାବୁ ଦଣ୍ଡବତ ।

ଗୋବ—ତୁମେ ! କପିଳ ! ତୁମମାନଙ୍କର ଏ ଅବସ୍ଥା !

୨ୟ କୋଷ୍ଟ—ବାବୁ ! ଆମମାନଙ୍କର ଏ ଦଶା ନ ହେବ ତ ଆଉ କାହାର ଏ ଦଶା ହେବ ! ମୁଁ ନିରଞ୍ଜନ ବାବୁଙ୍କର ଦାନା ଖାଇଥିଲି, ଚଉଧୁରୀଙ୍କ କଥାରେ ପଡ଼ି ତାଙ୍କ ମୃତ୍ୟୁରେ ଯୋଗ ଦେଲି । ତାଙ୍କର ଉଇଲ ଜାଲରେ ପ୍ରଧାନ ଯୋଗାଡ଼କର୍ତ୍ତା ମୁହିଁ । ପୁଣି ଚଉଧୁରୀଙ୍କର ବିଶେଷ ବିଶ୍ୱାସୀ ହୋଇ ବହୁ ଅର୍ଥ ଉପାର୍ଜନ କଲି । ଶେଷକୁ ପୁଣି ତାଙ୍କ ସହିତ ବିଶ୍ୱାସଘାତକତା କରି ସେମାନଙ୍କୁ ସବଂଶରେ କାରାବଦ୍ଧ କରାଇଅଛି । ମୋର ଏହିସବୁ ପାପର ଶାସ୍ତି ନ ହୋଇଥିଲେ ପରମେଶ୍ୱରଙ୍କୁ ଅନ୍ଧ କହିବାକୁ ହୁଅନ୍ତା ।

ଉଭୟ କୋଷ୍ଟ—ଆଜ୍ଞା ଆମ୍ଭେମାନେ ଆପଣମାନଙ୍କ ନିକଟ ଘୋର ଅପରାଧୀ ।

୧ମ କୋଷ୍ଟ—ଆମ୍ଭେମାନେ ବେମାନ୍, ନିମକହାରାମ୍ । ଆପଣ-ମାନଙ୍କର ଦାନା ଖାଇ ବରାବର ଆପଣମାନଙ୍କର ଅମଙ୍ଗଳ କରିଅଛୁଁ । ଆମ୍ଭମାନଙ୍କ ବଂଶରେ ଆଉ କେହି ନାହାନ୍ତି ।

୨ୟ କୋଷ୍ଟ—ଚୋରି କରି, ଧପାବାଜି କରି, ବେଇମାନି କରି ଆପଣମାନଙ୍କ ଘରୁ ଯାହା ନେଇଥିଲୁଁ, ତାହା ଯେ କୁଆଡ଼େ ଗଲା, ତାହାର ଠିକଣା ନାହିଁ । ଏବେ ଘର

ନାହିଁ, ଦ୍ୱାର ନାହିଁ, ସବୁ ବନ୍ଦ ହୋଇଅଛି । ଆମ୍ଭେମାନେ କେବଳ ଭିକ୍ଷାରେ ଜୀବନଧାରଣ କରୁଅଛୁଁ ।

ଉଭୟ-କୋଷ୍ଠ—ଆମ୍ଭମାନଙ୍କୁ କ୍ଷମା କରନ୍ତୁ ।

ଗୋବ—ଭଗବାନଙ୍କ ନିକଟରେ କ୍ଷମା ଭିକ୍ଷା କର । ଭଗବାନ୍ ତୁମ୍ଭମାନଙ୍କର ଆତ୍ମାର ଶାନ୍ତିବିଧାନ କରନ୍ତୁ ।

( ଖରସ୍ୱଙ୍କୁ ବହୁ ବହୁ ଅର୍ଥ ପ୍ରଦାନ ଓ ସମସ୍ତଙ୍କର ପ୍ରସ୍ଥାନ । )



## ପଞ୍ଚମ ଦୃଶ୍ୟ ।

### କାରାଗୃହ ।

(କାରାଗୃହ ମଧ୍ୟରେ ରଜଧିର ରୋଗ ଶଯ୍ୟାରେ ଶୟାନ । ଜେଲର ବାବୁ ଏବଂ ଉଅଡ଼ରଗଣ ଦଣ୍ଡାୟମାନ । )

ରଜ—ଜେଲର ବାବୁ ! ଜେଲର ବାବୁ ! ମୁଁ ବଡ଼ ଯନ୍ତ୍ରଣା ଭୋଗୁଅଛି । ଏ ଜୀବନ ଯାଉ ନାହିଁ ! ଓଃ ! ଓଃ ! ଜେଲର ବାବୁ ହେ !

ଜେଲର୍—ଆମ୍ଭଙ୍କୁ ଡ଼କାଇଲ କାହିଁକି ?

ରଜ—ଆପଣଙ୍କୁ—ଆପଣଙ୍କୁ—ଡ଼କାଇଲି—ଏ ପ୍ରାଣ ଯିବାକୁ ନାହିଁ । ମୁଁ—ଘୋର ପାପୀ—ମୋର—ବିଶ୍ୱାସ—ମୋର ପାପ—ପ୍ରକାଶ—ନ ହେବାଯାଏ—ମୋର—ପ୍ରାଣ ବାୟୁ—ବହିର୍ଗତ ହେବ ନାହିଁ । ମୋର—

ଯନ୍ତ୍ରଣା--ନିବୃତ୍ତ ହେବ ନାହିଁ । ମୋର—ଯନ୍ତ୍ରଣା—ନିବୃତ୍ତିର—ଏକମାତ୍ର ଔଷଧ—ମୃତ୍ୟୁ । ମୋର—ମୃତ୍ୟୁ ହେଉ ନାହିଁ ।

ଜେଲର—ଅପରାଧ କରଥିଲ । କାରାଦଣ୍ଡ ଭୋଗ କରୁଅଛ । ଅକାରଣରେ ବ୍ୟସ୍ତ ହୁଅ ନାହିଁ । ଡ଼ାକ୍ତର ବାବୁ ଔଷଧ ଦେଇ ଅଛନ୍ତି, ଔଷଧ ଖାଅ, ଆରୋଗ୍ୟ ହୋଇ ଯିବ ।

ଚଉ—ଆରୋଗ୍ୟ--ହେବ ନାହିଁ ।

୧ମ ଭୃତ୍ୟ—ହଜୁର ! ବୁଢା ଅଦ୍‌ମି, ବହୁତ୍ ତକ୍‌ଲିଫ୍ ପାଉଚି ।

ଚଉ—ଆପଣଙ୍କ ନିକଟରେ--ପାପ--ପ୍ରକାଶ କରିବ । କାଲ ଅପରାଧରେ—କାରା ଦଣ୍ଡ—ପାଇଅଛ । ମୋର—ଅପରାଧ---ଚୋରିକ ନୁହେଁ । ମୁଁ—ଘୋର ପାପୀ, ମୋର—ଅପରାଧର—ସୀମା ନାହିଁ । ମୋର—ପାପର—ସଂଖ୍ୟା ନାହିଁ ।

ଜେଲର—ଆଉ କଣ କହିବ କହ ।

ଚଉ—ବ୍ରଜବନ୍ଧୁ—ସାମନ୍ତରାୟଙ୍କର—ଅତୁଲ ସମ୍ପତ୍ତି ଥିଲା । ଦେଖି—ବଡ଼ ଲୋଭ ହେଲା । ତାଙ୍କ ପୁଅ—ନିରଞ୍ଜନର—କୋଷ୍ଠୀ ମଗାଇଲି । ମୋର କନ୍ୟା କୋଷ୍ଠୀ ସଙ୍ଗେ—ମେଳ ହେଲା ନାହିଁ । ନର-ରାକ୍ଷସୀ ଯୋଗ ହେଲା । ମନରେ— ବଡ଼ ଦୁଃଖ ହେଲା । ପୁଣି ପାପାଶା—ଅଧିକ ବଢି ଉଠିଲା । ମନେ କଲି ଜାମାତାର ଯେବେ—ମୃତ୍ୟୁ ହେବ—ସମସ୍ତ ସମ୍ପତ୍ତି ହସ୍ତଗତ ହେବ ।

କନ୍ୟାର କୋଷ୍ଠୀ ପରିବର୍ତ୍ତନ କଲି । କନ୍ୟାର ବିବାହ ହେଲା । ସହସା–ବୈବାହିକ ପରଲୋକ ପ୍ରାପ୍ତ ହୋଇଲେ । ଜାମାତାର—ମୂରବି ହେଲି । ଜାମାତାର ଅର୍ଥ—ଆତ୍ମସାତ୍ କରିବାକୁ ଲାଗିଲି । କ୍ରମେ କ୍ରମେ—ଜାମାତା—ବୁଝି ପାରିଲେ । ତାଙ୍କ ସହିତ—ମନୋମାଳିନ୍ୟ ଘଟିବାର ଉପକ୍ରମ ହେଲା । ଦୁର୍ଭାଗ୍ୟକ୍ରମେ—ଜାମାତା—ରୋଗାକ୍ରାନ୍ତ ହେଲେ । ରୋଗାବସ୍ଥାରେ ତାଙ୍କୁ ବିଷ ପ୍ରୟୋଗ କଲି । ନିଜର ଜାମାତାକୁ—ନିଜେ ହତ୍ୟା କରିଅଛି । ଏ ପାପର ପ୍ରାୟଶ୍ଚିତ୍ତ କାହିଁ ? ଏ ପାପ ମୋର—ମୋଚନ ହେବ କି ପ୍ରକାରେ ! ସେ ହତ୍ୟା ଅପରାଧର—ଦଣ୍ଡ ହୋଇ ନାହିଁ ।

ଜେଲର୍—ଏ ମହାପାତକ ! ଏ ଭୀଷଣ ଘଟଣା ଶୁଣି ମୋର ହୃତ୍କମ୍ପ ହେଉଅଛି । ତୁମ୍ଭେ ପିତା ହୋଇ ତୁମ୍ଭର ଏ ପ୍ରବୃତ୍ତି କି ପ୍ରକାରେ ହୃଦୟରେ ଜାତ ହେଲା । ମୁଁ ଏତେକାଳ ଜେଲଖାନାରେ କାର୍ଯ୍ୟ କଲି, ମାତ୍ର ଏପରି ଅପରାଧର କଳ୍ପନା ମଧ୍ୟ ଶୁଣି ନ ଥିଲି !

ତଉ—ଏତିକି ନୁହେଁ—ଅଧିକ ଅଛି । ଜାମାତାର ମୃତ୍ୟୁ ପରେ—ଉଇଲ ଖଣ୍ଡିଏ ଜାଲ କଲି । ତହିଁରେ—ସମସ୍ତ ସମ୍ପତ୍ତି—ମୋର କରି ନେଲି ।

୧ମ ଉଅ—ବୁଢା ହମାଦ୍କା ପୋଷ୍ୟପୁତ୍ର ବନ୍‌ଗିଆ !

ତଉ—ସେହି—ଜାଲ ଅପରାଧରେ—ଦଣ୍ଡ ଭୋଗ କରୁଅଛି । ଜାମାତାର—ସମସ୍ତ ସମ୍ପଦ ହସ୍ତଗତ କଲି । କନ୍ୟା—

ପାଗଳ ହୋଇ—ପ୍ରାଣ ତ୍ୟାଗ କଲା । ତାର—ମୃତ୍ୟୁର
କାରଣ ମୁହିଁ ।

ଜେଲର—ଶୁଣି ମୋର ହୃଦୟ ସ୍ତମ୍ଭିତ ହେଉଅଛି । କ କଠିଣ
ହୃଦୟ ! ମନେ କରଥିଲି, ଜେଲରମାନଙ୍କ ହୃଦୟ ଅତି
କଠୋର । କିନ୍ତୁ ତୁମ୍ଭର ହୃଦୟ ତଦପେକ୍ଷା କଠିଣ ।

ଚଉ—ବଜ୍ର କଠିଣ—ବଜ୍ର କଠୋର । ଅଧୁର ଶୁଣନ୍ତୁ ।
ଜାମାତା ଧନରେ—ମହାଜନୀ ଆରମ୍ଭ କଲି । ମୋର
ଖାତକ ହେଲେ—ଋଣର ପରିଶୋଧ ନାହିଁ । ନାନାପ୍ରକାର
ଶଠତାଚରଣ କରି—ମୂଳ ଧନର—ସହସ୍ର ଗୁଣ ଅଦାୟ
କରେଁ । ତଥାପି ମୂଳ ଧନ—ଅକ୍ଷୁଣ୍ଣ ରହିଥାଏ । ଓହୋ !
ଆହା ! ବାପ୍‌ରେ ! ମାଗୋ ! ବାବୁ ହେ ! କଣ୍ଠ ଶୁଖିଗଲା !
ବଡ଼ ପିପାସା । ଉହ ତୃଷା—ଟିକିଏ ଜଳ—ଟିକିଏ
ଜଳ (ଉଆଡ଼ରର ଜଳ ପ୍ରଦାନ) ଓହୋ ! ଓହୋ !
ବାବୁ ହେ ! ଏ ଘଟଣା ସବୁ—ଏତେବେଳେ ସ୍ମରଣ
ହୋଇ—ମତେ ଅଧିକ—କାତର କରୁଅଛି । ମୋର
ଅନୁମାନ ହେଉଅଛି—ମୋର ଜାମାତା—ମୋର
କନ୍ୟା—ମୋର ସେହି ଖାତକଗଣ—ସମସ୍ତେ ଏକତ୍ରିତ
ହୋଇ—ମୋର ଦଣ୍ଡ ବିଧାନ କରିବାକୁ—ଆସୁଛନ୍ତି ।
ଓହୋ ! ଓହୋ ! ଜେଲର ବାବୁ ! ଜେଲର ବାବୁ !
ଫେର ଆଇଲେ ! ଫେର ଆଇଲେ ! ହେଇ ! ହେଇ !
ମାର ! ମାର ! ବାବୁ ! ବାବୁ ! ହେଇ ମୋର ଜାମାତା !
ହେଇ ମୋର କନ୍ୟା ! ହେଇ ସେହି ଖାତକମାନେ !

ରକ୍ଷା କର ! ରକ୍ଷା କର ! ତୁମ୍ଭମାନଙ୍କର ଜଗାବ ବୁଢି-
ଦେବ ! ତମସ୍ତକ ଉଆପସ ଦେବ ! ସୀମନ୍ତ୍ରନ ! ତୁ
ମୋର କନ୍ୟା ! ନରଞ୍ଜନ ! ତୁମେ ମୋର ଜାମାତା !
ତୁମ୍ଭେମାନେ ରକ୍ଷା କର ! ( ସହସା ଉତ୍ଥାନ ) ରକ୍ଷା
କର ! ରକ୍ଷା କର ! ରକ୍ଷା କର ( ପତନ ) ରକ୍ଷା—
କର—ର—

( ପଟକ୍ଷେପ । )



Printed by V. Kar, The U. S. Press, Cuttack.